ମହାନ୍ ବିପ୍ଳବୀ

# ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଜୀବନ କଥା




ଲେଖକ

ନିରଞ୍ଜନ ସେଠ



ବୁକ୍ସ୍ ଇଣ୍ଟରନ୍ୟାସନାଲ

ବାଙ୍କା ବଜାର କଟକ - ୨

ମହାନ୍ ବିପ୍ଳବୀ

# ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଜୀବନ କଥା

ନିରଞ୍ଜନ ସେଣ୍ଠ

ବୁକ୍ସ୍ ଇଣ୍ଟରନ୍ୟାସନାଲ
ବାଙ୍କା ବଜାର, କଟକ-୨

মহান্ বিপ্লবী

# ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଜୀବନ କଥା

*ଲେଖକ*

**ଶ୍ରୀ ନିରଞ୍ଜନ ସେଣ୍ଠ**

ପୂର୍ବତନ ଶିକ୍ଷକ, କଇଥା ଚମ୍ପାପୁର, ଗାନ୍ଧି ଶିକ୍ଷାଶ୍ରମ

*ପ୍ରକାଶକ*

**ବୁକ୍ସ୍ ଇଣ୍ଟରନ୍ୟାସନାଲ**

ବାଙ୍କା ବଜାର, କଟକ-୨

ଫୋନ୍-୦୬୭୧-୨୬୧୮୫୯୮

*ଅକ୍ଷରସଜ୍ଜା*

ଗୁଡ୍ଡୁ ଡି.ଟି.ପି. ଆର୍ଟ,

ଏଫ୍/୬୨୬, ସେକ୍ଟର-୬, ସିଡିଏ, କଟକ

*ମୁଦ୍ରଣ*

**ଭଗବତୀ ପ୍ରେସ୍**

ସହିଦ ନଗର, ଭୁବନେଶ୍ୱର

ପ୍ରଥମ ପ୍ରକାଶ : ୨୦୦୮

*ମୂଲ୍ୟ :* ଟ ୩୦.୦୦

# ପାଠକ ମାନଙ୍କୁ ପଦେ ଅଧେ

ଊନବିଂଶ ଶତାବ୍ଦୀର ଶେଷ ଆଡକୁ ୰ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଜନ୍ମ । ସିପାହୀ ବିଦ୍ରୋହ ପରେ ଜନ ଅସନ୍ତୋଷ ଶାନ୍ତ ପଡି ନଥିଲା । ବିଭିନ୍ନ ସମୟରେ ଓ ବିଭିନ୍ନ ସ୍ଥାନରେ ବିଦେଶୀ ଶାସନ ବିରୁଦ୍ଧରେ ବିଦ୍ରୋହ ଆତ୍ମପ୍ରକାଶ କରୁଥିଲା । ସେହିପରି ଓଡିଶାର ଏକ ଗଡଜାତ ରାଜ୍ୟରେ, ଦଶପଲ୍ଲା ଯାହା ଖଣ୍ଡପଡା ଅନ୍ତର୍ଗତ ଥିଲା ସେଠାରେ ଆଦିବାସୀ ମାନଙ୍କ ମଧ୍ୟରେ ବିଦ୍ରୋହର ଅଗ୍ନି ଜଳି ଉଠିଥିଲା । ତାହାର ନେତୃତ୍ୱ ଯେଉଁମାନେ ନେଇଥିଲେ ସେଥିରେ ଥିଲେ ଅନ୍ୟତମ କନିଷ୍ଠ ବିଦ୍ରୋହୀ ଗୋବିନ୍ଦ ଚନ୍ଦ୍ର ମିଶ୍ର ।

ତାଙ୍କର ବାଲ୍ୟଜୀବନ ଠାରୁ ଶେଷ ଜୀବନ ପର୍ଯ୍ୟନ୍ତ ଅତ୍ୟନ୍ତ ଦୁଃଖ, ଯାତନା, କ୍ଳେଶ ଓ ଲାଞ୍ଛନାରେ ପୂର୍ଣ୍ଣ । ସହଜରେ ତ ସେ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କୁ ତଳସ୍ତରରୁ ଉପରକୁ ଉଠାଇବା ପାଇଁ କେହି ନ ଥିଲେ । ସେ ନିଜ ଗୋଡରେ ନିଜେ ଠିଆ ହୋଇଥିଲେ । ବିଧିବଦ୍ଧ ଛାତ୍ର ଜୀବନ କ'ଣ ତାଙ୍କର ନଥିଲା । ପାଠପଢା ଛାଡି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ତେଣୁ ମାଟ୍ରିକ୍ ପରେ ଆଉ ଉପରକୁ ପଢି ପାରିନଥିଲେ ।

ଜୀବନରେ ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ସଂସ୍ପର୍ଶରେ ସେ ଆସିଛନ୍ତି ଯଥା ମହାତ୍ମା ଗାନ୍ଧି, ରବୀନ୍ଦ୍ର ନାଥ ଠାକୁର, ବିନୋବା ଭାବେ, ଦୀନବଂଧୁ ଆଣ୍ଡ୍ରୁଜ, ରାଜେନ୍ଦ୍ର ପ୍ରସାଦ ପ୍ରଭୃତି ।

ନିଜର ପାରିବାରିକ ଜୀବନ କ'ଣ ତାଙ୍କର ନଥିଲା । ତେଣୁ ପରିବାର ବା ଜୀବନର ସୁଖ, ସ୍ୱାଛନ୍ଦ୍ୟ ପାଇଁ କିଛି କରି ପାରି ନାହାନ୍ତି । କଟକ ଜିଲ୍ଲାର ଏକ ଅଖ୍ୟାତ ପଲ୍ଲିକୁ ଆସି ଜୀବନର ଯୌବନ ଓ ପୌଢ ଅବସ୍ଥା କଟାଇଛନ୍ତି । ଦୀନ, ଦରିଦ୍ର, ଅସହାୟଙ୍କ ସେବା କରିଛନ୍ତି । ଶେଷରେ କଟକରେ ନିଜର ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି ନିଜର ପୋଷ୍ୟ ପୁତ୍ରଙ୍କ ଗୃହରେ । ସେହି ମହାତ୍ମାଙ୍କ ସମ୍ବନ୍ଧରେ ଖୁବ୍ ସଂକ୍ଷେପରେ କିଛି ଶୁଣିବା ।

ଆଉ ସେଇ ମହାନ ବିପ୍ଲବୀ, ସର୍ବ ତ୍ୟାଗୀ, ଦେଶ ପ୍ରେମୀଙ୍କ ଉଦ୍ଦେଶ୍ୟରେ ଏହି ପୁସ୍ତିକାଟିକୁ ଶ୍ରଦ୍ଧାଞ୍ଜଳି ରୂପେ ତାଙ୍କ ସ୍ୱର୍ଗତ ଆତ୍ମାର ଚରଣରେ ବିନମ୍ର ନିବେଦନ କରୁଛି ।

-ଲେଖକ

# ମାହାଙ୍ଗା ବିଧାୟକଙ୍କ ବାର୍ତ୍ତା

ମହାନ୍ ବିପ୍ଳବୀ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଜୀବନ କଥା ପୁସ୍ତିକା ପ୍ରବୀଣ ଶିକ୍ଷକ ନିରଞ୍ଜନ ସେଣ୍ଠ ରଚନା କରିଛନ୍ତି । ଏହା ସ୍କୁଲ କଲେଜ ଛାତ୍ରଛାତ୍ରୀମାନଙ୍କ ପାଇଁ ଏକାନ୍ତ ଉପଯୋଗୀ ଅଟେ । ପୁସ୍ତକଟି ସୁଖପାଠ୍ୟ ହୋଇଛି ।

ବିପ୍ଳବୀ ଗୋବିନ୍ଦ ଚନ୍ଦ୍ର ମିଶ୍ର ସ୍ୱାଧୀନତା ସଂଗ୍ରାମୀ ଥିଲେ । ମହାତ୍ମା ଗାନ୍ଧିଙ୍କ ପଟ୍ଟଶିଷ୍ୟ ରୂପେ ଗୋବିନ୍ଦ ମିଶ୍ର ସାବରମତୀ ଆଶ୍ରମରେ କିଛିକାଳ ଅବସ୍ଥାନ କରିଥିଲେ । ତାପରେ ଓଡ଼ିଶା ଫେରିଆସି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବା ସଙ୍ଗେ ସଙ୍ଗେ ରଚନାତ୍ମକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । କଇଥା-ଚମ୍ପାପୁରଠାରେ ସେବାଗ୍ରାମ ପ୍ରତିଷ୍ଠା କରିଥିଲେ । ମହାତ୍ମାଗାନ୍ଧି ୧୯୩୪ରେ ହରିଜନ ପଦଯାତ୍ରା ସମୟରେ ବଇରୀ ଷ୍ଟେସନରୁ ଓହ୍ଲାଇ ଚାଲିଚାଲି ଆସି ଗୋବିନ୍ଦ ମିଶ୍ରଙ୍କ ସେବାଶ୍ରମରେ ଦୁଇଦିନ ରହିଥିଲେ ଓ ସେହିଦିନଠାରୁ ଏହା ଗାନ୍ଧି ସେବାଶ୍ରମ ନାମରେ ପରିଚିତ ହୋଇଥିଲା । ଗାନ୍ଧିଜୀଙ୍କ ପରାମର୍ଶକ୍ରମେ ସେ ଗାନ୍ଧିସେବାଶ୍ରମକୁ ଗାନ୍ଧି ଶିକ୍ଷାଶ୍ରମରେ ପରିଚିତ କରି ଉଚ୍ଚଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଥିଲେ । ଯେଉଁ ବିଦ୍ୟାଳୟରେ ପୂର୍ବତନ ଶିକ୍ଷାମନ୍ତ୍ରୀ ସ୍ୱର୍ଗତ ପ୍ରଦୀପ୍ତ କିଶୋର ଦାସ ତାଙ୍କ ଛାତ୍ରଜୀବନ ଶେଷ ପରେ ପରେ ଗୋବିନ୍ଦ ମିଶ୍ରଙ୍କ ଆହ୍ୱାନରେ ଶିକ୍ଷକତା କରିଥିଲେ ।

ଆଜି ଯୁବପୀଢ଼ି ସଂଗ୍ରାମୀ ଗୋବିନ୍ଦ ମିଶ୍ରଙ୍କୁ ଭୂଲିଗଲେଣି । ଓଡ଼ିଶାରେ ପ୍ରତିଭାପୂଜା ପ୍ରତି ଯଥେଷ୍ଟ ଆଗ୍ରହ ପ୍ରକାଶ ପାଉ ନଥିବା ପରିତାପର ବିଷୟ ।

ଗାନ୍ଧି ଶିକ୍ଷାଶ୍ରମର ପ୍ରାକ୍ତନ ଶିକ୍ଷକ ଶ୍ରୀ ନିରଞ୍ଜନ ବାବୁ ଗୋବିନ୍ଦ ମିଶ୍ରଙ୍କ ଜୀବନୀ ଲେଖିଥିବାରୁ ମୁଁ ତାଙ୍କୁ ବଧାଇ ଜଣାଉଛି ଓ ତାଙ୍କ ଲେଖନୀର ନିର୍ଝରତା କାମନା କରୁଛି ।

୦୧.୦୬.୦୮

ବିକ୍ରମ କେଶରୀ ବର୍ମା
ବିଧାୟକ, ମାହାଙ୍ଗା

# ଜନ୍ମ ଓ ବାଲ୍ୟ ଅବସ୍ଥା

୧୮୮୮ ମସିହାରେ ଦଶପଲ୍ଲା ଗଡରେ ମାମୁଁ ଘରେ ସ୍ୱର୍ଗତ ଗୋବିନ୍ଦ ଚନ୍ଦ୍ର ମିଶ୍ର ଜନ୍ମ ଗ୍ରହଣ କରିଥିଲେ। ତାଙ୍କର ସାବକ ଘର ହେଉଛି ନୟାଗଡର ପଦ୍ମାଦେଇ ପୁରରେ। ପିତାଙ୍କ ନାମ ବୈଦ୍ୟନାଥ ମିଶ୍ର। ମାମୁଁଙ୍କର ସନ୍ତାନ ନ ହେବାରୁ ତାଙ୍କ ପିତାଙ୍କୁ ଦଶପଲ୍ଲା ନେଇ ଯାଇଥିଲେ। ତାଙ୍କର ଏକ ନୈଷ୍ଠିକ ବ୍ରାହ୍ମଣ ପରିବାର।

ଦଶପଲ୍ଲାଗଡ ସ୍କୁଲରେ ସେ ପ୍ରାଥମିକ ଶିକ୍ଷା ପାଇଥିଲେ। ଅର୍ଥାଭାବରୁ ଶିକ୍ଷକମାନଙ୍କୁ ରୋଷେଇ କରି ଦେଉଥିଲେ ଏବଂ ବିଦ୍ୟାଳୟରେ ଭଲ ପାଠ ପଢୁଥିଲେ। ତେଣୁ ପଣ୍ଡିତ ଶ୍ରୀ ଉପେନ୍ଦ୍ର ଚନ୍ଦ୍ର ମିଶ୍ର ଓ ହେଡ୍ ମାଷ୍ଟର ଶ୍ରୀ ବାସୁଦେବ ପଟ୍ଟନାୟକ ଗୋବିନ୍ଦ ଚନ୍ଦ୍ରଙ୍କୁ ଆଦର କରୁଥିଲେ। ନୟାଗଡ ସ୍କୁଲରେ ମାଇନର ପଢିଥିଲେ। ୫ମ ଶ୍ରେଣୀରେ ପଢିବା ବେଳେ ତାଙ୍କୁ ୧୭/୧୮ ବର୍ଷ ହୋଇଥାଏ। ତାଙ୍କର କକେଇ ତାଙ୍କର ଇଚ୍ଛା ବିରୁଦ୍ଧରେ ବହୁତ ବୟସ ହେଲାଣି ବୋଲି ତାଙ୍କୁ ବିବାହ କରାଇ ଦେଇଥିଲେ।

୧୯୧୦ରେ ମାଇନର ପାଶ୍ କଲା ପରେ କଟକ ଆସି ଶୂର ଦେଓଙ୍କ ବସାରେ ରହିଲେ। ପାଠ ପଢିବା ପାଇଁ ବିଭିନ୍ନ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ଯୋଗା ଯୋଗ କଲେ। ବ୍ରଜସୁନ୍ଦର ଦାସଙ୍କ ଘରେ ପ୍ରଥମେ ପଣ୍ଡିତ ଗୋପବଂଧୁ ଦାସଙ୍କ ସହିତ ଦେଖା ହୋଇଥିଲା।

ଶୂର୍ ଦେଓ ଓ କନିକା ରାଜାଙ୍କ ଠାରୁ କିଛି ସାହାଯ୍ୟ ପାଇଲେ ମାତ୍ର ତାହା ଯଥେଷ୍ଟ ନ ହେବାରୁ ରେବା ରାୟ୍ ଓ ତାଙ୍କର ପିତା ଜଗନ୍ନାଥ ରାୟ୍ ତାଙ୍କର ସମସ୍ତ ଖର୍ଚ୍ଚ ବହନ କଲେ ଓ ନିଜ ଘରେ ରଖାଇଲେ। ନୟାଗଡ ଷ୍ଟେଟରୁ ମାସିକ ଟ.୯/- ବୃତ୍ତି ପାଇବାରୁ ରେବା ରାୟଙ୍କ ଘର ଛାଡି ଆସି ହରିହର ଘାଟଠାରେ ଥିବା ଏକ ମେସ୍‌ରେ ରହିଲେ। ରେବା ରାୟ୍ ତାଙ୍କୁ ଦେଶ ସେବା କରିବା ପାଇଁ ପ୍ରେରଣା ଦେଇଥିଲେ। ତା'ଛଡା ସେ ବାସନ୍ତୀ ଥିଏଟରରେ ରାଣୀ ଦୁର୍ଗାବତୀ ନାଟକ ଓ ଶିବାଜୀଙ୍କ ଜୀବନୀ ପାଠ କରି ଦେଶର ସ୍ୱାଧୀନତା ପାଇଁ କାର୍ଯ୍ୟ କରିବାକୁ ପ୍ରେରଣା ପାଇଲେ। ନିଜ ଘରେ ଏକ ନୈଶ୍ୟ ବିଦ୍ୟାଳୟ ଖୋଲି ଦଶପଲ୍ଲା ପିଲାଙ୍କୁ ପାଠ ପଢାଉଥିଲେ।

ମିଶନ ସ୍କୁଲରେ ପଢିବା ବେଳେ ବାବା ପ୍ରେମାନନ୍ଦ ଭାରତୀଙ୍କ ସଂସ୍ପର୍ଶରେ ଆସି ଧର୍ମ ଆଡକୁ ତାଙ୍କର ମନ ଯାଇଥିଲା ।

ଦେୱାନ ଭାବଗ୍ରାହୀ ବିଶ୍ୱାଳଙ୍କ ଯୋଗୁଁ ଦଶପଲ୍ଲାର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇଥାଏ । ୧୯୧୩ରେ ରାଜା ନାରାୟଣ ଭଞ୍ଜ ଦେଓଙ୍କର ମୃତ୍ୟୁ ହୋଇଥାଏ ଓ ତାଙ୍କର କକେଇ ପୁଅ ଭାଇ ବୈଷ୍ଣବ ଚରଣ ଦେବଙ୍କ ଶାସନ ଗାଦି ପାଇଁ ଦାବି ପଲ୍‌ଟିକାଲ ଏଜେଣ୍ଟଙ୍କ ଦ୍ୱାରା ଉପେକ୍ଷିତ ହୋଇଥାଏ ।

ରାଜାଙ୍କ ପୋଷ୍ୟପୁତ୍ର କିଶୋର ଚନ୍ଦ୍ର ଭଞ୍ଜଦେଓ ଭାବଗ୍ରାହୀ ବିଶ୍ୱାଳଙ୍କ ଯୋଗୁଁ ଗାଦିସୀନ ହେଲେ ଏବଂ ନାବାଳକ ରାଜା ଥିବାରୁ ଭାବଗ୍ରାହୀ ବିଶ୍ୱାଳ ରାଜ ପରିବାରର ସର୍ବେସର୍ବା ହେଲେ ଏବଂ ରାଜ ସମ୍ପତ୍ତି ଲୁଟପାଟ କଲେ ।



## ଦଶପଲ୍ଲାରେ କନ୍ଧ ମେଳି

ଦଶପଲ୍ଲାର ପ୍ରଥା ଅନୁସାରେ କନ୍ଧମାନେ ତାଙ୍କ ରାଜାଙ୍କୁ ଗାଦିସୀନ କରନ୍ତି। ଭାବଗ୍ରାହୀ ବିଶ୍ୱାଳଙ୍କ ମନମୁଖି କାରବାର ଦେଖି ଦଶପଲ୍ଲାରେ କନ୍ଧ ମେଳି ଆରମ୍ଭ ହୋଇଗଲା। ଏଥିରେ ବୈଷ୍ଣବ ଦେଓ ଓ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କୁ ଜଡିତ କରାଗଲା ଯେହେତୁ ବୈଷ୍ଣବ ଦେଓଙ୍କ ସହିତ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କର ସଂପର୍କ ଥିଲା। କନ୍ଧମାନଙ୍କ ଉପରେ ଅତ୍ୟାଚାର କାହାଣୀ ସାପ୍ତାହିକୀ 'ଆଶା'ରେ ଗୋବିନ୍ଦ ଚନ୍ଦ୍ର ପ୍ରକାଶ କରୁଥିଲେ। ପଣ୍ଡିତ ଗୋପବଂଧୁ ଦାସଙ୍କୁ ମଧ୍ୟ ଦଶପଲ୍ଲା କନ୍ଧ ମେଳି କଥା ଶୁଣାଇଥିଲେ। ଏଥିରେ ଗୋପବଂଧୁ ଦାସ କାନ୍ଦି ପକାଇ ଥିଲେ।

କନ୍ଧ ମାନଙ୍କ ବିରୁଦ୍ଧରେ ସାକ୍ଷୀ ଦେବାକୁ ଦାରୋଗା ଦାମ ରଥ ଓ ଭାବଗ୍ରାହୀ ବିଶ୍ୱାଳ ଗୋବିନ୍ଦଙ୍କୁ କଟକରୁ ଡକାଇ ଆଣିଲେ। ମାତ୍ର ଗୋବିନ୍ଦ ଚନ୍ଦ୍ର ଓ ବୈଷ୍ଣବ ଦେଓ ସାକ୍ଷୀ ଦେବାକୁ ମନା କରି ଦେଲେ। ଦଣ୍ଡ ସ୍ୱରୂପ ଉଭୟଙ୍କୁ ଏକ କୋଠରୀରେ ବନ୍ଦ କରି ରଖାଗଲା। ବାଧ୍ୟ ହୋଇ ଗୋବିନ୍ଦ ଚନ୍ଦ୍ର ବଙ୍କା ଟଙ୍କା ଅକ୍ଷରରେ ଦସ୍ତଖତ କରି କଟକ ପଳାଇ ଆସିଲେ। ତାଙ୍କ ନାମରେ ଓ୍ୱାରେଣ୍ଟ ବାହାରିଲା।

ଅନୁଗୁଳର ଡେପୁଟି କମିଶନ୍‌ର ଲୁକ ସାହେବ ଓ ପଲିଟିକାଲ୍ ଏଜେଣ୍ଟଙ୍କୁ ଦୁଇ ଖଣ୍ଡ ଚିଠି ଲେଖିଲେ କନ୍ଧ ଅତ୍ୟାଚାର ବିଷୟରେ ଓ କଟକ ଛାଡି କଲିକତା ପଳାଇ ଆସିଲେ।

## କଲିକତା ଜୀବନୀ

୧୯୧୫ ମସିହା ଏପ୍ରିଲ ବା ମେ ମାସର କଥା। କଲିକତା ଆସି ମିର୍ଜାପୁର ଷ୍ଟ୍ରିଟରେ ଥିବା ହଷ୍ଟେଲରେ ରହିଲେ। ହଷ୍ଟେଲରେ ଛାତ୍ରମାନେ ବୋଲପୁରର ଶାନ୍ତି ନିକେତନ ଯାଇ ମହାତ୍ମା ଗାନ୍ଧିଙ୍କୁ ସାକ୍ଷାତ କରିବାକୁ ପରାମର୍ଶ ଦେଲେ। ସୁରେନ୍ଦ୍ର ନାଥ ମିତ୍ର ନାମକ ଜଣେ ଭଦ୍ର ବ୍ୟକ୍ତି ଗୋବିନ୍ଦଙ୍କୁ ଆଣି ଶାନ୍ତି ନିକେତନରେ ପହଞ୍ଚାଇ ଦେଲେ। ମାତ୍ର ସେତେବେଳକୁ ଗାନ୍ଧିଜୀ ମାଡ୍ରାସ ଚାଲିଯାଇ ଥାଆନ୍ତି। ସାବରମତୀ ଆଶ୍ରମ ନିର୍ମାଣ ହେଉଥିବାରୁ ମହାତ୍ମା ଗାନ୍ଧି ରବୀନ୍ଦ୍ର ନାଥଙ୍କ ପାଖରେ ରହୁଥିଲେ।

ଶାନ୍ତିନିକେତନରୁ ଫେରି ଆସିବା ପୂର୍ବରୁ ରବୀନ୍ଦ୍ର ନାଥଙ୍କର ସେକ୍ରେଟାରୀ ଦୀନବଂଧୁ ଆଣ୍ଡ୍ରୁଜଙ୍କ ସହିତ ଦେଖା କଲେ ଏବଂ ଦଶପଲ୍ଲା ଅତ୍ୟାଚାର କାହାଣୀ କହିଲେ । ଆଣ୍ଡ୍ରୁଜଙ୍କର ସେତେବେଳର ବଡଲାଟ ଲର୍ଡ ହାର୍ଡିଞ୍ଜଙ୍କ ସହିତ ବଂଧୁତା ଥାଏ । ତେଣୁ ଗୋବିନ୍ଦଙ୍କ ଆବେଦନ ପତ୍ର ତଥା ରବୀନ୍ଦ୍ର ନାଥଙ୍କର ବ୍ୟକ୍ତିଗତ ଚିଠି ଆଣ୍ଡ୍ରୁଜ ସାହେବ ବଡଲାଟଙ୍କ ପାଖକୁ ପଠାଇ ଦେଲେ । ଦେଢ଼ ମାସ ପରେ ବଡଲାଟଙ୍କ ଠାରୁ ନିରାଶ ଉତ୍ତର ଶୁଣି ବୋଲପୁର ଛାଡିଲେ ।

କଲିକତା ଆସି କେତେକ ପ୍ରଭାବଶାଳୀ ବ୍ୟକ୍ତିଙ୍କ ସହିତ ଦେଖା କଲେ ଏବଂ ସୁରେନ୍ଦ୍ର ନାଥ ବାନାର୍ଜିଙ୍କର 'ଦି ବେଙ୍ଗାଲି' କାଗଜରେ ଦଶପଲ୍ଲା ବିଷୟରେ ଲେଖା ବାହାର କଲେ । ମୋତି ଲାଲ ଘୋଷ ଅମୃତ ବଜାର କାଗଜରେ ଦଶପଲ୍ଲା କଥା ମଧ୍ୟ ବାହାର କଲେ ।

ମିର୍ଜାପୁରରୁ ଆସି ୱେଲିଂଟନ୍ ଷ୍ଟ୍ରିଟରେ ଏକ ମେସ୍‌ରେ ରହିଲେ । ସେଠାରେ ରହି ମାଟ୍ରିକ୍ ପାଶ୍ କରିବା ପାଇଁ ଇଚ୍ଛା କଲେ । ବାଗନାନ୍ ବୋଲି ଏକ ସ୍କୁଲର ହେଡ୍‌ମାଷ୍ଟରଙ୍କୁ ଚିଠି ଲେଖି ଫାଷ୍ଟ କ୍ଲାସ୍‌ରେ ନାମ ଲେଖାଇଲେ ଓ ସେକେଣ୍ଡ ଡିଭିଜନ୍‌ରେ ପାଶ୍ କଲେ ।

ପାଶ୍ କରିବା ପରେ ପୁଣି ବୋଲପୁର ଚାଲି ଆସିଲେ ଓ ଶାନ୍ତିନିକେତନରେ ରହିଲେ । ଏହି ସମୟରେ ଗୋପବଂଧୁ ଦାସ ଶାନ୍ତି ନିକେତନ ପରିଦର୍ଶନରେ ଆସିଥାନ୍ତି ଏବଂ ଓଡିଶାର ଖବର ସବୁ ଶୁଣାଇ ସତ୍ୟବାଦୀ ଫେରିଯାଇ କାର୍ଯ୍ୟ କରିବାକୁ ପରାମର୍ଶ ଦେଲେ । ଶାନ୍ତିନିକେତନର ଅଧ୍ୟକ୍ଷ ତାକୁ ସଂଧାନ ଦେଲେ ଗୁପ୍ତଚର ପୋଲିସ ତାଙ୍କୁ (ଗୋବିନ୍ଦଙ୍କୁ) ଖୋଜୁଛି । ତେଣୁ ବୋଲପୁର ଛାଡି କଲିକତାରେ ଓଡିଆ ମେସ୍‌ରେ କିଛି ଦିନ ରହିବା ପରେ ୧୯୧୬ରେ ସତ୍ୟବାଦୀରେ ଆସି ପହଞ୍ଚିଥିଲେ । ସତ୍ୟବାଦୀର ପରିବେଶ ଭଲ ନ ଲାଗିବାରୁ କଟକ ଆସି ଜଣେ ପଣ୍ଡିତଙ୍କ ବସାରେ ରହିଲେ । ସତ୍ୟବାଦୀରୁ ଶାନ୍ତିନିକେତନ ଆସି ଗୌର ଚନ୍ଦ୍ର ମୁଖାର୍ଜିଙ୍କ ଘରେ ରହିଲେ । ପୁରାତନ ବଂଧୁ ସୁରେନ୍ ମିତ୍ରଙ୍କୁ ଭେଟିବା ପାଇଁ ବନାରସ ଗଲେ । ସେ ନ ଥିବାରୁ ଓ ଏଲାହାବାଦ ଗଲେ । ସେଠାରେ ଭାରତ ସେବକ ସମାଜର ଲକ୍ଷ୍ମୀ ନାରାୟଣ ସାହୁଙ୍କ ପାଖରେ ରହିଲେ ।

## ବିପ୍ଳବୀ ଜୀବନ

ଆଣ୍ଡ୍ରୁଜ ସାହେବଙ୍କ ପରାମର୍ଶ କ୍ରମେ ସେ ସାବରମତୀ ଆଶ୍ରମକୁ ଆସିଲେ। ଲକ୍ଷ୍ମୀ ନାରାୟଣ ସାହୁ କଂଗ୍ରେସ (ନରମ ପନ୍ଥୀଦଳ)ର ବମ୍ବେ ବୈଠକରେ ଯୋଗ ଦେବା ପାଇଁ ଆସିଥିଲେ। ଆଣ୍ଡ୍ରୁଜ ସାହେବ ଗୋବିନ୍ଦ ବାବୁଙ୍କୁ ଆଶ୍ରମରେ ସ୍ଥାୟୀ କରାଇ ଦେଲେ। ସେତେବେଳେ ଆଶ୍ରମରେ ୨୦/୨୫ ଜଣ ସଭ୍ୟ ରହୁଥାନ୍ତି। ସେଠାରେ ବିନୋବାଜୀଙ୍କ ସହିତ ଉତ୍ତମ ସଂପର୍କ ଗଢି ଉଠିଲା। ଦୁହେଁ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେବାପାଇଁ ରାଓଲାଟ ଆଇନ ବିରୁଦ୍ଧରେ ଅହମ୍ମଦାବାଦ ଆସିଲେ ୧୯୧୯ ଅପ୍ରିଲ ୬ ତାରିଖରେ। କିନ୍ତୁ ତା' ପୂର୍ବରୁ ମାର୍ଚ୍ଚ ମାସରେ ଦିଲ୍ଲୀରେ ଆନ୍ଦୋଳନ ଆରମ୍ଭ ହୋଇଗଲା।

ଗାନ୍ଧିଜୀ ବମ୍ବେରେ ଅସୁସ୍ଥ ଥିବାରୁ ତାଙ୍କର ସେବା କରିବା ପାଇଁ ଅନ୍ୟମାନଙ୍କ ସହିତ ଗୋବିନ୍ଦ ବାବୁ ଯାଇଥିଲେ।

ରାଓଲାଟ ଆଇନ ବିରୁଦ୍ଧରେ ପଂଜାବରେ ଜାଲିଆନାୱାଲାବାଗରେ ନରସଂହାର ଅନୁଷ୍ଠିତ ହେଲା ଏବଂ ପଞ୍ଜାବରେ ପ୍ରବେଶ କରିବା ପାଇଁ ସବୁ ପଥ ବନ୍ଦ କରି ଦିଆଗଲା। ମହାତ୍ମାଜୀ ଜୀବନ ବିପନ୍ନ କରି ଦଳେ ସ୍ୱେଚ୍ଛାସେବୀ ପଞ୍ଜାବରେ ପ୍ରବେଶ କରିବା ପାଇଂ ଯୋଗାଡ କଲେ। ପଞ୍ଜାବ ବିଷୟରେ ସଚେତନ କରିବାପାଇଁ ୨ଟି ସାପ୍ତାହିକୀ, ୟଙ୍ଗଇଣ୍ଡିଆ ଓ ନବଭାରତ ମହାଦେବ ଦେଶାଇଙ୍କ ସଂପାଦକତ୍ୱରେ ପ୍ରକାଶ ପାଇଲା।

ଗୋବିନ୍ଦ ବାବୁ ବମ୍ବେରେ ଥିବା ସମୟରେ ରମା ବାବରଙ୍କଠାରୁ ସୂତାକଟା ଓ ଗୋଖେଲ ଏଡୁକେଶନ ସୋସାଇଟିରୁ ବଢେଇ କାମ ଶିଖିଥିଲେ। ତା'ଛଡା ହିନ୍ଦିଭାଷା ମଧ୍ୟ ସେଠାରେ ଶିଖିଲେ। ମହାତ୍ମା ଗାନ୍ଧି ଗୋବିନ୍ଦ ବାବୁଙ୍କ କାମରେ ଭାରି ସନ୍ତୁଷ୍ଟ ଥାଆନ୍ତି। ଦିନେ ଛେଳି ଦୁଧରେ ଏକ ଲୋମ ବାହାରିବାରୁ ଗୋବିନ୍ଦ ବାବୁଙ୍କୁ ଦୋଷ ଦିଆଗଲା କାରଣ ମହାତ୍ମାଜୀଙ୍କ ଖାଦ୍ୟ ଦାୟିତ୍ୱରେ ସେ ଥିଲେ। କିନ୍ତୁ ସେ ଦିନ ରେବା ଶଙ୍କରଙ୍କ ମହାରାଜ ନାମକ ଜଣେ ପାଚକ ମହାତ୍ମାଙ୍କ କ୍ଷୀର ସିଝାଇ ଥିଲେ। କିନ୍ତୁ ଦୋଷ ଦିଆଗଲା ଗୋବିନ୍ଦ ବାବୁଙ୍କୁ ଏବଂ ତାଙ୍କୁ ସେବା କାର୍ଯ୍ୟରୁ ବାହାର କରି ଦିଆଗଲା।

ମହାତ୍ମାଜୀଙ୍କ ଉପରେ ନିଷେଧାଦେଶ ଥିବାରୁ ସେ ଗୋବିନ୍ଦଜୀଙ୍କୁ ଲାଲ୍‌ବାହାଦୂର ଚାନ୍ଦ ମେହେଟାଙ୍କ ସହିତ ପଂଜାବ ପଠାଇ ଦେଲେ ଓ ସେ

ଲାହୋରଠାରେ ମେହେଟାଙ୍କ ଘରେ ରହିଲେ। ଗୋବିନ୍ଦ ବାବୁଙ୍କ ଦେହରେ ପଂଜାବୀ ଖାଦ୍ୟ ଗଲା ନାହିଁ ଏବଂ ସେ ଅସୁସ୍ଥ ଅବସ୍ଥାରେ ମେହେଟାଜୀଙ୍କ ଘରେ ରହିଲେ। ସେଠାରେ ଲୋକମାନଙ୍କର ରାଜନୈତିକ କାର୍ଯ୍ୟ ଓ ଆନ୍ଦୋଳନ କାର୍ଯ୍ୟ ଅପେକ୍ଷା ଧର୍ମ କାର୍ଯ୍ୟ ଅଧିକ ପ୍ରଭାବ ଥିବା ହେତୁ ଗୋବିନ୍ଦଜୀ ରାଜନୈତିକ କାର୍ଯ୍ୟ କରାଯାଇ ପାରିବ ନାହିଁ ଦେଖି ଲାହୋର ଫେରି ଆସିଲେ।

ଜାଲିଆନାୱାଲାବାଗରେ ହତ୍ୟାକାଣ୍ଡ ପରେ ମାଲବ୍ୟଜୀ ଓ ମହାତ୍ମା ଗାନ୍ଧି ହତ୍ୟାକାଣ୍ଡ ସ୍ଥଳ ପରିଦର୍ଶନ କରିବାକୁ ଆସିଥିଲେ। ତାଙ୍କ ସହିତ ଗୋବିନ୍ଦଜୀ ମଧ୍ୟ ପାଖେ ପାଖେ ରହିଥିଲେ। କଂଗ୍ରେସର ଚାପ ଫଳରେ ସରକାର ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ବିଷୟରେ ତଦନ୍ତ କମିଟି (ହଣ୍ଟର କମିଟି) ବସାଇଲେ। କଂଗ୍ରେସ ମଧ୍ୟ ତା ନିଜ ତରଫରୁ ଅନୁସନ୍ଧାନ କମିଟି ବସାଇଲେ। କିପରି ତଦନ୍ତ ହେବ ଏବିଷୟରେ ସରକାର ଗାନ୍ଧିଜୀଙ୍କ ପ୍ରସ୍ତାବ ଗ୍ରହଣ କଲେନି ଏବଂ ମାଲବ୍ୟଜୀ ଓ ଚିତ୍ତରଂଜନ ଦାସଙ୍କ ସହିତ ମତନୈକ୍ୟ ହେବାରୁ ମହାତ୍ମାଗାନ୍ଧି ପଂଜାବ ଛାଡିବାକୁ ସ୍ଥିର କଲେ। ମହାତ୍ମା ଗାନ୍ଧିଙ୍କ ସହିତ ଗୋବିନ୍ଦଜୀ ଅମୃତସର ଆସିଲେ। କାରଣ ଅମୃତସରରେ କଂଗ୍ରେସ ଅଧିବେଶନ ବସିବାର ସ୍ଥିର ହେଲା। ମହାତ୍ମା ଗାନ୍ଧିଙ୍କ ପ୍ରସ୍ତାବ ଅନୁଯାୟୀ ଜାଲିଆନାୱାଲାବାଗକୁ ଏକ ଜାତୀୟ ସମ୍ପତ୍ତିରେ ପରିଣତ କରିବ। ରାତି ରାତି ଲୋକମାନେ ଜାଲିଆନାୱାଲାବାଗରେ ଥିବା ତାଙ୍କ ସମ୍ପତ୍ତିକୁ ଦାନ କରି ଦେଲେ। କଂଗ୍ରେସ ହଣ୍ଟର କମିଟିକୁ ବର୍ଜନ କରିଥିଲା।

ସରକାରଙ୍କର ମଣ୍ଟେଗୁ ଚେମସ୍ ଫୋର୍ଡ ଶାସନ ସଂସ୍କାର ପାଶ୍ କରାଇ ନେଲେ କିନ୍ତୁ ଏହି ସଂସ୍କାରକୁ ଗ୍ରହଣ କରିବେ କି ନାହିଁ ବୈଠକ୍ ବସୁଥାଏ। ଅମୃତସର ଅଧିବେଶନ ପରେ ମହାତ୍ମା ଗାନ୍ଧି ଆଶ୍ରମ ଫେରିଲେ। ତାଙ୍କ ସହିତ ଗୋବିନ୍ଦଜୀ ମଧ୍ୟ ଫେରି ଆସିଲେ।

## ଅସହଯୋଗ ଆନ୍ଦୋଳନ

୧୯୨୦ରେ ଗୋବିନ୍ଦଜୀ ଆଶ୍ରମରୁ ବମ୍ବେ ଆସିଲେ। ତୁର୍କୀରେ ଇଂରେଜ ସରକାର ଖଲିଫାଙ୍କ ଅଧିକାର ଉପରେ ହସ୍ତକ୍ଷେପ କରିଥିଲେ। ମୁସଲମାନଙ୍କ ଆନ୍ଦୋଳନ ଯୋଗୁଁ ଇଂରେଜ ସରକାର ଖଲିପାଙ୍କ ଅଧିକାର ଫେରାଇ ଦେବାକୁ ପ୍ରତିଶ୍ରୁତି ଦେଇ ଥିଲେ ୧ମ ବିଶ୍ୱଯୁଦ୍ଧ ଶେଷ ପରେ। ମାତ୍ର ସେ ତାହା ନ କରିବାରୁ

ଭାରତର ମୁସଲମାନ ମାନେ ଖିଲାଫତ୍ ଆନ୍ଦୋଳନ କଲେ ମହମ୍ମଦ ଅଲ୍ଲି, ଡାକ୍ତର ସୌକତ ଅଲ୍ଲି ଓ ଡାକ୍ତର କିଚ୍ଲୁଙ୍କ ନେତୃତ୍ୱରେ। ମହାତ୍ମା ଗାନ୍ଧିଙ୍କ ସହିତ ଆଲୋଚନା ପରେ ସ୍ଥିର ହେଲା ଯେ ସରକାରଙ୍କ ସହିତ ସବୁ ସଂପର୍କ ତୁଟାଇ ଦେବେ। ଖଦି ପ୍ରଚାର କାର୍ଯ୍ୟରେ ମହାତ୍ମାଜୀ ବମ୍ବେ ଆସିଲେ। ଏହିଠାରୁ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହେଲା।

ଓଡିଶାରେ ଗୋପବଂଧୁ ଦାଶ ସତ୍ୟାବଦୀ ସ୍କୁଲ, ପୁରୀ ଦୁର୍ଭିକ୍ଷ, ଓଡିଆ ପିଲାଙ୍କ ଚାକିରୀ ଓ ଦେଶ ସେବା କଥା ଚିନ୍ତା କରୁଥିଲେ। ସେ ଭାରତ କଥା ଚିନ୍ତା କରି ନଥିଲେ। ମହାତ୍ମା ଗାନ୍ଧିଙ୍କୁ ଗୋବିନ୍ଦଜୀ ଅନେକ ଥର ଓଡିଶା କଥା ସୂଚାଉଥାନ୍ତି। ପୁରୀ ଦୁର୍ଭିକ୍ଷ କଥା ମହାତ୍ମ ଗାନ୍ଧି ତଥା ଭାରତ ସେବକ ସମାଜର ଅମୃତଲାଲ୍ ଠକରଙ୍କୁ କହିଥାନ୍ତି। ମହାତ୍ମା ଗାନ୍ଧି ଠକରଙ୍କୁ ଓଡିଶା ପଠାଇଲେ ଓ ପୁରୀ ଦୁର୍ଭିକ୍ଷ ଦାୟିତ୍ୱ ହାତକୁ ନେଲେ। ଓଡିଶାର ଦୁର୍ଭିକ୍ଷ ସାହାଯ୍ୟ ପାଇଁ ମହାତ୍ମା ଗାନ୍ଧି 'ୟଙ୍ଗଇଣ୍ଡିଆ' ଓ 'ନବଜୀବନ' ପତ୍ରିକା ମାଧ୍ୟମରେ ସାହାଯ୍ୟ ମାଗିଲେ। ଗୋବିନ୍ଦଜୀ ମହାତ୍ମାଜୀଙ୍କୁ ଖଣ୍ଡ ବିଖଣ୍ଡିତ ଓଡିଶା, ଓଡିଆ ଭାଷା ଲୋପ ଓ ଓଡିଶାର ଦାରିଦ୍ର୍ୟ କଥା କୁହନ୍ତି। ତେଣୁ ମହାତ୍ମାଜୀ ଭାଷା ସୂତ୍ରରେ ପ୍ରଦେଶ ଗଠନ କଥା ଚିନ୍ତା କଲେ। ଦୁର୍ଭିକ୍ଷ ଅଞ୍ଚଳ ପାଇଁ ସତ୍ୟବାଦୀ ସ୍କୁଲର ଛାତ୍ର, ଶିକ୍ଷକ ବହୁତ କାର୍ଯ୍ୟ କରିଥିଲେ। ଗୋବିନ୍ଦକୀ ଦୁର୍ଭିକ୍ଷ ଅଞ୍ଚଳରେ ୬ ମାସ ରହିଥିଲେ।

ଏହି ସମୟରେ ଲୋକମାନ୍ୟ ତିଳକଙ୍କ ଦେହାନ୍ତ ହୁଏ ଓ ବିଲାତ ପାର୍ଲିଆମେଣ୍ଟରେ ଜାଲିଆନାୱାଲାବାଗର ହତ୍ୟାକାଣ୍ଡର ବିଚାରରେ କଂଗ୍ରେସ ଦାବି ଅଗ୍ରାହ୍ୟ କରାଯାଇଥିଲା। ସେଥିପାଇଁ ଜନ ଅସନ୍ତୋଷ ଦେଖାଯାଇଥିଲା। ଏହି ଗଣହତ୍ୟା ସମୟରେ ଲାଲା ଲଜପତ୍ ରାୟ୍ ଆମେରିକାରେ ଦେଶାନ୍ତର ଦଣ୍ଡ ଭୋଗୁଥିଲେ ଓ ପରେ ସେ ଆସି କଲିକତା କଂଗ୍ରେସ ଅଧିବେଶନର ସଭାପତି ହେଲେ। ଏହି ଅଧିବେଶନ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବରେ ପୁରୁଣା ନେତା ଯଥା ଲଜପତ୍ ରାୟ୍, ଚିତ୍ତରଂଜନ ଦାଶ, ବିପିନ ପାଲ୍, ମଦନ ମୋହନ ମାଲବ୍ୟ ପ୍ରଭୃତି ନ ଥିଲେ। ଶେଷରେ ନାଗପୁର ଅଧିବେଶନରେ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ ଗୃହିତ ହେଲା। ଚିତ୍ତରଂଜନ ଦାଶ ଓ ଲାଲା ଲଜପତ୍ ରାୟ୍ ବଦଳି ଯିବା ହେତୁ।

ଗାନ୍ଧିଜୀଙ୍କ ସହିତ ଗୋପବଂଧୁ ବାବୁଙ୍କ ସାକ୍ଷାତ ଗୋବିନ୍ଦ ବାବୁ ନିଜର ପରମ କର୍ତ୍ତବ୍ୟ ବୋଲି ଭାବୁଥିଲେ। ମହାତ୍ମାଜୀଙ୍କ ସହିତ ସାକ୍ଷାତ ସମୟରେ

ଗୋପବଂଧୁ ବାବୁ ଗୋବିନ୍ଦଜୀଙ୍କୁ ଓଡିଶା ପଠାଇବା ଲାଗି ଅନୁରୋଧ କଲେ। ଶେଷରେ ସ୍ଥିର ହେଲା ଗୋବିନ୍ଦଜୀ ଆଶ୍ରମ ଯାଇ ସେଠାରୁ ଓଡିଶା ଫେରିବେ।

ଅସହଯୋଗର ବାର୍ତ୍ତାପ୍ରଚାର ପାଇଁ ମହାତ୍ମାଜୀ ଓ୍ୱାର୍ଦ୍ଧାଠାରେ ଏକ ସତ୍ୟାଗ୍ରହ ଆଶ୍ରମ ପ୍ରତିଷ୍ଠା କଲେ। ସେଠାରୁ ବମ୍ବେ ଆସି କଲିକତାରେ ପହଞ୍ଚିଲେ ଚିତ୍ତରଂଜନ ଦାଶଙ୍କ ଅନୁରୋଧରେ। ତାଙ୍କ ସହିତ ଦେବୀ ଦାସଗାନ୍ଧି, ମହାଦେବ ଦେଶାଇ ଓ ଗୋବିନ୍ଦ ବାବୁ ଥିଲେ। ପୂର୍ବ ବଂଗର କୁମିଲା ଠାରେ ଅଭୟ ଆଶ୍ରମ ନାମରେ ଏ ଆଶ୍ରମ ପ୍ରତିଷ୍ଠା ହେଲା। ଗୋବିନ୍ଦ ବାବୁଙ୍କ ମନରେ ଆଶଙ୍କା ଥାଏ ଅସହଯୋଗ ବାର୍ତ୍ତା ଓ ଦେଶ ସେବା ପ୍ରଚାର ପାଇଁ କାର୍ଯ୍ୟ କରିବେ।

୧୯୨୧ ଫେବୃୟାରୀ ମାସରେ ଗୋବିନ୍ଦ ବାବୁ କଟକ ଫେରି ଆସିଲେ। ଚକ୍ରଧରପୁର ଉତ୍କଳ ସମ୍ମିଳନୀରେ କଂଗ୍ରେସ ଆଦର୍ଶ ଗ୍ରହଣ କରାଯାଇଥାଏ। କଟକର ସତ୍ୟବାଦୀ ମେସ୍‌ର ଅଧିକାଂଶ ଛାତ୍ର ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ। ଏହି ମେସ୍ ପରେ ସ୍ୱରାଜ୍ୟ ଆଶ୍ରମରେ ପରିଣତ ହେଲା। ଗୋବିନ୍ଦ ବାବୁଙ୍କ ଉପରେ ସୂତାକଟାଇବା ଓ ହିନ୍ଦି ଶିକ୍ଷା ଭାର ଥାଏ। ଗୋବିନ୍ଦ ବାବୁ ଖଦଡ କୁରୁତା ପିନ୍ଧୁଥାନ୍ତି। ତାଙ୍କଠାରୁ ଖଦଡ଼ କୁରୁତା ନେଇ ଗୋପବଂଧୁ ଦାସ ପିନ୍ଧିଲେ।

ଅସହଯୋଗ ଆନ୍ଦୋଳନ ହେଉଛି ଓଡିଶାର ପ୍ରଥମ ରାଜନୈତିକ ଆନ୍ଦୋଳନ। କଂଗ୍ରେସ ଭାଷା ସୂତ୍ରରେ ପ୍ରଦେଶ ଗଠନକୁ ସ୍ୱୀକାର କରିଥାଏ। ବିଭିନ୍ନ ଜିଲ୍ଲାରେ କାମ କରିବା ପାଇଁ ହରେକୃଷ୍ଣ ମହତାବ, ନିରଞ୍ଜନ ପଟ୍ଟନାୟକ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ରହିଲେ। କଟକ ଜିଲ୍ଲାପାଇଁ ଗୋବିନ୍ଦ ଚନ୍ଦ୍ର ମିଶ୍ର, ଯଦୁମଣି ମଙ୍ଗରାଜ, ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ, ଦୟାନିଧି ସ୍ୱାଇଁ, ରହିଥିଲେ। ଗୋବିନ୍ଦ ବାବୁ କଟକ ସ୍ୱରାଜ୍ୟ ଆଶ୍ରମରେ ରହିଲେ।

## ମହାତ୍ମା ଗାନ୍ଧିଙ୍କ ଉତ୍କଳ ଆଗମନ

୧୯୨୧ ମାର୍ଚ୍ଚ ୨୪ ତାରିଖରେ ମହାତ୍ମା ଗାନ୍ଧି ଓଡିଶା ଆସିଲେ ଅସହଯୋଗର ବାର୍ତ୍ତା ପ୍ରଚାର ପାଇଁ। ଓଡିଶାରେ ୫ ଦିନରହି ବିଜୟଓ୍ୱାଡା ଠାରେ ନିଖିଳ ଭାରତ କଂଗ୍ରେସ ଅଧିବେଶନରେ ଯୋଗ ଦେଲେ। ଗୋବିନ୍ଦଜୀ ଗାଁକୁ ଗାଁ ବୁଲି ଅସହଯୋଗର ବାର୍ତ୍ତା ପ୍ରଚାର କରିବା ତଥା ତିଳକ ପାଣ୍ଠି ପାଇଁ ଚାନ୍ଦା ସଂଗ୍ରହ କରିବା ଥିଲା ତାଙ୍କର ଦୈନନ୍ଦିନ କାର୍ଯ୍ୟ।

ସେତେବେଳେ ପଣ୍ଡିତ ଗୋପବଂଧୁ ଦାସ ଦେଶର ଜଣେ ଅଗ୍ରଗଣ୍ୟ ନେତା। "ସମାଜ" ସାପ୍ତାହିକୀ ତାଙ୍କର ବାହାରୁଥାଏ। ଏହା କଂଗ୍ରେସର ବାର୍ତ୍ତା ପ୍ରଚାର କରୁଥାଏ। କର୍ମୀମାନେ ନିଜ ଇଚ୍ଛା ଅନୁସାରେ କାର୍ଯ୍ୟ କଲେ ସେ ଅସନ୍ତୋଷ ପ୍ରକାଶ କରନ୍ତି।

ପ୍ରାଦେଶିକ କଂଗ୍ରେସ କମିଟ ବୈଠକରେ ଶ୍ରୀଯୁକ୍ତ ଭାଗିରଥୀ ମହାପାତ୍ରଙ୍କ ପ୍ରସ୍ତାବ ଅନୁସାରେ କଟକ ସ୍ୱରାଜ୍ୟ ଆଶ୍ରମ କଟକ କଂଗ୍ରେସ କମିଟି ଅଧିନରେ ରହିଲା। ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଗୋଟିଏ ଆଶ୍ରମ ପ୍ରତିଷ୍ଠା କରି ଅସହଯୋଗ ଚଳାଇବା ପାଇଁ ସ୍ଥିର ହେଲା। ଗୋପବଂଧୁ ବାବୁଙ୍କ ଇଚ୍ଛା ଥିଲା କଟକ ସ୍ୱରାଜ୍ୟ ଆଶ୍ରମ ପ୍ରାଦେଶିକ କଂଗ୍ରେସ ଆଶ୍ରମ ହେବ ଏବଂ ତା ଅଧିନରେ ଅନ୍ୟାନ୍ୟ ଆଶ୍ରମ ପରିଚାଳିତ ହେବ। ତାଙ୍କ କଥା ନ ରହିବାରୁ ସେ କଟକ ଛାଡି ସାକ୍ଷୀଗୋପାଳ ଫେରିଗଲେ। ଏଣୁ କଟକ ଆଶ୍ରମ ଦାୟିତ୍ୱରେ ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ ଓ ଗୋବିନ୍ଦ ବାବୁ ରହିଲେ। ଜଗତସିଂହପୁରରେ ଅଳକା ଆଶ୍ରମ ପ୍ରତିଷ୍ଠା ହେଲା। ଏହି ଆଶ୍ରମ ଦାୟିତ୍ୱରେ ଗୋପବଂଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ଭାଗିରଥୀ ମହାପାତ୍ର ଓ ପ୍ରାଣକୃଷ୍ଣ ପଡିହାରୀ ରହିଲେ।

କଟକ ଜିଲ୍ଲା ଦାୟିତ୍ୱରେ ରହିଲେ ଅଟଳ ବିହାରୀ ଆଚାର୍ଯ୍ୟ, ଯଦୁମଣି ମଙ୍ଗରାଜ ଓ ଗୋବିନ୍ଦ ଚନ୍ଦ୍ର ମିଶ୍ର। ଗୋବିନ୍ଦ ବାବୁ ଓ ଅଟଳ ବାବୁ କଟକ ଆଶ୍ରମରେ ରହି କାର୍ଯ୍ୟ କରୁଥାନ୍ତି। ବାଙ୍କି, ସାଲେପୁର, ମାହାଙ୍ଗା, ବଡଚଣା ଆଦି ଥାନାମାନଙ୍କରେ କଂଗ୍ରେସ କାର୍ଯ୍ୟକ୍ରମ ଚାଲିଥାଏ। ସ୍ୱେଚ୍ଛାସେବୀ ମାନେ ଶୃଙ୍ଖଳିତ ନଥିଲେ। ଗୋପବଂଧୁ ଚୌଧୁରୀ ମଧ୍ୟ ଅଳକା ଆଶ୍ରମରେ ବଛାବଛା ସ୍ୱେଚ୍ଛାସେବୀ କର୍ମୀ ଯୋଗାଡରେ ଥାଆନ୍ତି। କାରଣ ଅସହଯୋଗ ଆନ୍ଦୋଳନର ଅସଫଳତା ମୂଳରେ ଥିଲା ସ୍ୱେଚ୍ଛାସେବୀ ମାନଙ୍କର ସ୍ୱେଚ୍ଛାଚାରିତା।

ନିଖିଳ ଭାରତ କଂଗ୍ରେସ କମିଟି ଅରଟ ପ୍ରଚାର ଓ ବିଲାତି ଜିନିଷ ବର୍ଜନ କାର୍ଯ୍ୟକ୍ରମ ସ୍ଥିର କରିଥାଆନ୍ତି। ଓଡିଶାରେ ପିକେଟିଂ ସମ୍ଭବ ନ ହେଲେ ମଧ୍ୟ ଅସହଯୋଗ ଆନ୍ଦୋଳନର ନମୁନା ସ୍ୱରୂପ ସେ ପିକେଟିଂ କରିବାକୁ ଚାହୁଁଥିଲେ।

ଅହିଂସା ଅସହଯୋଗ ଆନ୍ଦୋଳନ ଚାଲୁ ଥିବା ସମୟରେ ମହାତ୍ମା ଗାନ୍ଧି ଓ କଂଗ୍ରେସର କେତେକ ନେତା ସିମଳାଠାରେ ବଡଲାଟ୍ ଲର୍ଡ ହାର୍ଡିଜିଙ୍କୁ ଦେଖା କରିଥିଲେ। ଏହାକୁ ଅନ୍ୟାନ୍ୟ କଂଗ୍ରେସ କର୍ମୀମାନେ ପସନ୍ଦ କରି ନଥିଲେ। ବଡଲାଟ ଅହିଂସା ଆନ୍ଦୋଳନରେ ହସ୍ତକ୍ଷେପ କରି ନ ଥିଲେ।

ଗୋବିନ୍ଦ ବାବୁ ଦଇଜଣ ସ୍ୱେଚ୍ଛାସେବୀଙ୍କୁ ନେଇ ବିଲାତି ଲୁଗା ଦୋକାନ ଆଗରେ ପିକେଟିଂ କଲେ। ପିକେଟିଂ ସକାଳ ୭ଟାରୁ ଦିନ ୧୨ଟା ଓ ଉପରବେଳା ୩ଟାରୁ ରାତି ୧୨ଟା ଯାଏ ଚାଲିଥାଏ ଓ ଉପରବେଳା ୩ଟାରୁ ରାତି ୧୨ଟା ପର୍ଯ୍ୟନ୍ତ ଚାଲିଥାଏ।

ଥରେ ଜଣେ ମାରୱାଡ଼ି ଇଚ୍ଛାରାମ ପିକେଟିଂ କରିବାରୁ ଗୋବିନ୍ଦ ବାବୁଙ୍କ ନାମରେ ଥାନାରେ ଏତଲା ଦେଲା। ଏସ୍.ପି. ଶ୍ରୀକୃଷ୍ଣ ମହାପାତ୍ର ଗୋବିନ୍ଦ ବାବୁଙ୍କୁ ଗିରଫ କରି ଜେଲ ପଠାଇଦେଲେ ମାତ୍ର ପ୍ରମାଣ ଅଭାବରୁ ଏସ୍.ଡି.ଓ. ଡାନି ସାହେବ ଖଲାସ କରି ଦେଲେ। ଗୋବିନ୍ଦ ବାବୁ ଖଲାସ ହେବା ପରେ ବିଲାତି ଲୁଗା ବେପାରୀ ମାନେ ଚୁକ୍ତି କରି ଦେଲେ ୧୯୨୮ ମସିହା ଡିସେମ୍ବର ଶେଷ ପର୍ଯ୍ୟନ୍ତ ବିଲାତି ଲୁଗା ମଗାଇବେ ନାହିଁ। ଏହିପରି କଟକ ଜିଲ୍ଲାକୁ ଅନୁସରଣ କରି ପୁରୀ, ବାଲେଶ୍ୱର ଜିଲ୍ଲାରେ ମଧ୍ୟ ପିକେଟିଂ ଚାଲିଲା। ଏହାକୁ ପ୍ରଦେଶ କଂଗ୍ରେସ କମିଟି ସମର୍ଥନ କଲେ।

ପ୍ରାଦେଶିକ, ଜିଲ୍ଲା ସ୍ତରରେ କଂଗ୍ରେସ କମିଟି ବୈଠକରେ କର୍ମୀମାନଙ୍କର ସମାବେଶ ହୁଏ। ଏଥିରେ ଯାହା ଆଲୋଚନା ହୁଏ ତାହା ଦଳ ସୃଷ୍ଟି କରିବା ମତ୍‌ଲବରେ ହେଉଥାଏ। ଏହାକୁ ଗୋବିନ୍ଦ ବାବୁ ପସନ୍ଦ କରୁ ନଥାନ୍ତି କାରଣ ରାଜନୈତିକ ଜୀବନ ଏକ ବିଳାସ ନୁହଁ ଏବଂ ଭଲ, ମନ୍ଦ ବିଚାର ଲୋକଙ୍କୁ ମୁହଁରୁ ଶୁଣି ସେ ଭ୍ରୂକ୍ଷେପ ନ କରି କର୍ମ କରି ଥାନ୍ତି।

ପିକେଟିଂ ପରେ ଅସହଯୋଗ ଆନ୍ଦୋଳନର ନୂଆ ରୂପରେଖ ପ୍ରକାଶ ପାଇଲା ଯଥା ସରକାରୀ ସ୍କୁଲରେ ପାଠ ନ ପଢାଇବା, ଖଜଣା ନ ଦେବା, ସରକାରୀ ଚାକିରୀ ନ କରିବା, କୋର୍ଟରେ ମୋକଦ୍ଦମା ନ କରିବା ଇତ୍ୟାଦି। ମୌଲାନା ଭ୍ରାତୃଦ୍ୱୟ ମୁସଲମାନ ମାନଙ୍କୁ ସୈନ୍ୟବାହିନୀରେ ଯୋଗ ନ ଦେବାପାଇଁ ଆହ୍ୱାନ ଦେଲେ ଓ ଗିରଫ ହେଲେ। ମହାତ୍ମା ଗାନ୍ଧି କରାଚି କଂଗ୍ରେସ କମିଟିର ଘୋଷଣା ନାମାକୁ ଦସ୍ତଖତ୍ କରାଇ ପ୍ରଚାର କଲେ।

ଆଇନ ଅମାନ୍ୟ ଆନ୍ଦୋଳନ ସ୍ୱରୂପ ଓଡିଶାର ଖଜଣା ବନ୍ଦ ପାଇଁ ଅନୁକୂଳ ବାତାବରଣ ନଥିବା ସତ୍ତ୍ୱେ କଟକ, ବାଲେଶ୍ୱରରେ ପାଉଣା ବନ୍ଦ ଆନ୍ଦୋଳନ ଚାଲିଲା। ଗୋବିନ୍ଦ ବାବୁ ଜଣେ ପୋଲିସ କର୍ମଚାରୀକୁ ଚାକିରୀ ଛାଡିବାକୁ କହିବାରୁ ରାଜଦ୍ରୋହ ଅପରାଧରେ ଗିରଫ ହୋଇ ଭାଗଲପୁର ଜେଲକୁ ଚାଲାଣ ହେଲେ। ଭାଗଲପୁର ଜେଲରେ ବିହାରର ଅନେକ ନେତୃ ସ୍ଥାନୀୟ ବ୍ୟକ୍ତି

ଥାଆନ୍ତି । ଜେଲରେ ଥିବା ବେଳେ ତିଳକ ମହାରାଜାଙ୍କ ଗୀତା ରହସ୍ୟ ଓଡିଆରେ ଅନୁବାଦ କଲେ ।

ଉତ୍ତର ପ୍ରଦେଶର ଅସହଯୋଗ ଆନ୍ଦୋଳନ ବେଳେ ଲୋକମାନେ ଚୌରି-ଚୌରାଠାରେ ପୋଲିସ୍ ଥାନା ପୋଡିଦେଲେ ଓ କେତେକ ପୋଲିସ ପୋଡ଼ି ହୋଇ ମରିବାରୁ ମହାତ୍ମା ଗାନ୍ଧି ଆନ୍ଦୋଳନ ବନ୍ଦ କରି ଦେଲେ। ଆନ୍ଦୋଳନ ବନ୍ଦ ହେବାରୁ ନେତାମାନଙ୍କୁ ଜେଲରୁ ଖଲାସ କରିଦିଆଗଲା । ଗୋବିନ୍ଦଜୀ ବାଲେଶ୍ୱର ଷ୍ଟେସନରେ ଓହ୍ଲାଇ କଟକ, ପୁରୀ, ସତ୍ୟବାଦୀ ହୋଇ ସ୍ୱରାଜ୍ୟ ଆଶ୍ରମକୁ ଆସିଲେ ।

ଗୟାରେ କଂଗ୍ରେସ ଅଧିବେଶନରେ ଚିତ୍ତରଂଜନ ଦାସ ସଭାପତି ହୋଇଥାଆନ୍ତି । ତାଙ୍କ ପ୍ରସ୍ତାବ ନଗରର କାଉନ୍‌ସିଲ ମାନେ କାଉନ୍‌ସିଲ ତ୍ୟାଗ ନ କରି କାଉନ୍‌ସିଲରେ ପ୍ରବେଶ କରିବେ। ଏହାକୁ କଂଗ୍ରେସ ଗ୍ରହଣ ନ କରିବାକୁ ସେ ଇସ୍ତଫା ଦେଲେ। କଂଗ୍ରେସରେ ପଣ୍ଡିତ ନୀଳକଣ୍ଠ ଦାସ ପରିବର୍ତ୍ତନ ବାଦୀ ଥିଲେ। ଗୋପବଂଧୁ ଚୌଧୁରୀ କେତେ ଗୁଡିଏ ସୂତାକଟା ଓ ଖଦଡ ବୁଣା କେନ୍ଦ୍ର ଖୋଲିଥାଆନ୍ତି ।

ଗୋବିନ୍ଦଜୀଙ୍କର ପରିବାର ସଂପର୍କ ନଥିଲା। କାରଣ ତାଙ୍କର ପରିବାର ବୋଲି କିଛି ନଥିଲା। ସ୍ୱରାଜ୍ୟ ଆଶ୍ରମ ପରିଚାଳନା ପାଇଁ ସେ ସ୍ଥାୟୀ ଚାନ୍ଦାର ବ୍ୟବସ୍ଥା କଲେ। ଶ୍ରୀଯୁକ୍ତ ଗୋପବଂଧୁ ଚୌଧୁରୀଙ୍କ ଆଶ୍ରମକୁ (ଅଳକା) ଅଧିକ ସାହାଯ୍ୟ ଆସୁଥିଲା ।

୧୯୨୧ର ଅସହଯୋଗ ଆନ୍ଦୋଳନରେ ଓଡିଶାର ବହୁତ ଯୁବକ ତ୍ୟାଗ ସ୍ୱୀକାର କରିଛନ୍ତି ଓ ନିଜର ଭବିଷ୍ୟତକୁ ପୋଡିଜାଳି ଦେଇଛନ୍ତି । କଟକ, ପୁରୀ ଓ ବାଲେଶ୍ୱରର କର୍ମୀ ମାନେ ଯଦି ଏକତାବଦ୍ଧ ହୋଇ କାର୍ଯ୍ୟ କରିଥାନ୍ତେ ତାହା ହେଲେ ଓଡିଶାର ରାଜନୈତିକ ମାନଚିତ୍ର ବଦଳିଯାଇଥାନ୍ତା । ୧୯୨୧ ମସିହାରେ ଓଡିଶାରେ କଂଗ୍ରେସ ଅନୁଷ୍ଠାନ ଗଠିତ ହୋଇଥିଲା ଓ ୧୯୨୩ ବେଳକୁ ଶିଥିଳ ହୋଇଗଲା ।

୧୯୨୨ ମାର୍ଚ୍ଚ ୧୮ରେ ମହାତ୍ମା ଗାନ୍ଧି ଜେଲ ଯାଇଥିବାରୁ ସେହି ଦିନଟିକୁ ନିଖିଳ ଭାରତ କଂଗ୍ରେସ କମିଟି ତାକୁ ବିଶିଷ୍ଟ ଦିବସ ରୂପେ ପାଳନ କରୁଥାଏ। ମହାତ୍ମାଜୀ ଜେଲ ଗଲାପରେ ମଧ୍ୟ ଇଙ୍ଗ୍ ଇଣ୍ଡିଆର ସଂଖ୍ୟା ବାହାରୁଥାଏ।

ସେତିରେ ଦୀନବଂଧୁ ଆଣ୍ଡ୍ରୁଜ ମହାତ୍ମାଜୀଙ୍କ ବିଷୟରେ ଲେଖାରେ ଗୋବିନ୍ଦଜୀଙ୍କ ସୂଚନା ମଧ୍ୟ ଦେଇଥିଲେ।

ଜେଲରେ ଥିବାବେଳେ ଗୋବିନ୍ଦଜୀ ପୂରା କାମ କରିବାକୁ ସକ୍ଷମ ନ ହେବାରୁ ହାତ କଡ଼ା ପଡି ସ୍ୱତନ୍ତ୍ର ସ୍ଥାନରେ ରହିଲେ ଏବଂ ଜେଲ ସୁପରିଟେଣ୍ଡେଣ୍ଟଙ୍କ ଠାରୁ ନାନା ଲାଞ୍ଛନା ଭୋଗ କରିବାକୁ ପଡୁଥାଏ।

କନିକା ଆନ୍ଦୋଳନରେ ଅନେକ କର୍ମୀ ଜେଲରେ ଥାଆନ୍ତି। ସେଥିମଧ୍ୟରୁ ଉତ୍କଳମଣି ଗୋପବଂଧୁ ଦାସ ଓ ହରେକୃଷ୍ଣ ମହତାବ ପ୍ରଭୃତି। କନିକା ଆନ୍ଦୋଳନକୁ ଭାରତର ଦୃଷ୍ଟି ଆକର୍ଷଣ କରିବା ପାଇଁ ଗୋବିନ୍ଦଜୀ ବମ୍ବେ ଗଲେ। ବମ୍ବେରେ କଟକର ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ ଇଲେକ୍ଟ୍ରିକାଲ ଇଂଜନିୟରିଂ ବ୍ୟବସାୟ କରୁଥିଲେ। ସତ୍ୟବାଦୀ ବନ ବିଦ୍ୟାଳୟର ଆର୍ଥିକ ଦୂରବସ୍ଥା ସକାଶେ ଗୋବିନ୍ଦଜୀ ଭୁବନାନନ୍ଦଙ୍କ ସାହାଯ୍ୟ ଚାହିଁଲେ। ବମ୍ବେରେ ଅର୍ଥ ସଂଗ୍ରହରେ ଗୋବିନ୍ଦଜୀ ଅଧିକ ପାରିବାର ବୋଲି ସେ ମତ ଦେଲେ। ସେ ଗୋବିନ୍ଦଜୀଙ୍କୁ ସତ୍ୟବାଦୀ ବିଦ୍ୟାଳୟରୁ କାର୍ଯ୍ୟ ନିର୍ବାହିକା ସମିତିର ସଭ୍ୟ କଲେ।

ବମ୍ବେରେ ସେ ଶୁଣିଲେ ଯେ କଂଗ୍ରେସ ପାଣ୍ଠିରେ ପ୍ରଚୁର ଅର୍ଥ ଗଚ୍ଛିତ ଅଛି। କଂଗ୍ରେସ କମିଟିର ସଭ୍ୟ ଶ୍ରୀଯୁକ୍ତ ରାଜଗୋପାଳଚାରୀ ଓ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଥାଆନ୍ତି। ସେମାନେ ସତ୍ୟବାଦୀ ବନ ବିଦ୍ୟାଳୟକୁ ପାଞ୍ଚ ହଜାର ଟଙ୍କା ଆର୍ଥିକ ସାହାଯ୍ୟ ଦେଲେ।

କନିକାରେ ଘଟୁଥିବା ଅତ୍ୟାଚାର ବିଷୟରେ ଅବଗତ କରାଇବା ପାଇଁ ବିଶିଷ୍ଟ ସାଂବାଦିକ ମାନଙ୍କୁ ଡକାଇ ମାରଓ୍ୱାଡି ବିଦ୍ୟାଳୟ ହଲରେ ଗୋଟିଏ ସାଧାରଣ ସଭା କରାଇଥିଲେ। ସମାଜ ସଂସ୍କାରକ ନଟରାଜନ୍ ଏହାର ସଭାପତି ହେଲେ। କନିକା ବିଷୟରେ ଇଂରେଜୀ, ଗୁଜରାଟୀ ଓ ମରାଠା ସମ୍ବାଦ ପତ୍ର ମାନଙ୍କରେ ବାହାରିଲା।

ସ୍ୱରାଜ୍ୟ ଦଳରେ ଥିଲେ ଚିତ୍ତରଂଜନ ଦାସ ଓ ମୋତିଲାଲ୍ ନେହେରୁ। ସ୍ୱରାଜ୍ୟଦଳ ଓ କଂଗ୍ରେସ ମଧ୍ୟରେ ମିଳାମିଶା ପାଇଁ ଏଲାହାବାଦ ଅଧିବେଶନରେ ଚେଷ୍ଟା କରାଗଲା ମାତ୍ର ହୋଇ ପାରିଲାନି। ବମ୍ବେଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଦାୟିତ୍ୱରେ ଥିବା ସଭ୍ୟମାନେ ମିଳାମିଶା କରାଇଲେ ଅସହଯୋଗ ଆନ୍ଦୋଳନର ପରିବର୍ତ୍ତନ କରି। ପ୍ରାଦେଶିକ କଂଗ୍ରେସ କମିଟି ଏହି ମିଳାମିଶାକୁ ସଂପୂର୍ଣ୍ଣ ଗ୍ରହଣ କରି ପାରିଲେ ନାହିଁ।

## ଜାତୀୟ ପତାକା ସତ୍ୟାଗ୍ରହ

୧୯୨୧ ମସିହା ପର୍ଯ୍ୟନ୍ତ ଭାରତର କୌଣସି ଜାତୀୟ ପତାକା ନଥିଲା । ନାଗପୁର କଂଗ୍ରେସ ଅଧିବେଶନରେ ମହାତ୍ମା ଗାନ୍ଧି ଜାତୀୟ ପତାକାର କଳ୍ପନା କରି ରୂପ ଦେଇଥିଲେ ଯଥା ତ୍ରିରଙ୍ଗା ମାଧ୍ୟମରେ ଚରଖାର କଳ୍ପନା । ଜାତୀୟ ପତାକା ହେଉଛି ଜାତୀୟ ଜୀବନର ପ୍ରତୀକ । ଶୋଭାଯାତ୍ରାରେ ଜାତୀୟ ପତାକା ଧରି ଯିବା ଉପରେ ସରକାର ନିଷେଧାଦେଶ ଜାରୀ କରିଥାନ୍ତି । ଶୋଭାଯାତ୍ରାକାରୀ ମାନଙ୍କୁ ଜେଲ ଦଣ୍ଡ ଦିଆଗଲା । ମାତ୍ର ଶୋଭାଯାତ୍ରା ନକରି ପତାକା ଧରି ଯିବାକୁ ସରକାର ମାନି ନେଲେ ଏବଂ ପତାକାଧାରୀଙ୍କୁ ଜେଲ୍‌ରୁ ଖଲାସ କରି ଦେଲେ ।

ଗୋବିନ୍ଦ ବାବୁ କଟକ ଫେରି ଦେଶପଲ୍ଲୀରୁ ନିକର ସ୍ତ୍ରୀଙ୍କୁ ଆଣି ଚିକିତ୍ସା ପାଇଁ ଡଗରପଡାରେ ଗୋଟିଏ ଭଡା ଘରେ ରଖାଇଲେ । ତାଙ୍କର ଚିକିତ୍ସା ପାଇଁ ଶେଠ ଶ୍ରୀକାନ୍ତ ଓ ଅନ୍ୟାନ୍ୟ ବଂଧୁମାନେ ଉପହାର ଓ ଅର୍ଥ ପଠାଉଥାନ୍ତି । ତାଙ୍କର ଇଚ୍ଛା ଥିଲା ସ୍ତ୍ରୀଙ୍କୁ ଆରୋଗ୍ୟ କରି ଦେଶ କାର୍ଯ୍ୟରେ ନିୟୋଗ କରିବେ ।

ଅଲ୍ଲି ଭ୍ରାତୃଦ୍ୱୟ ଜେଲରୁ ଖଲାସ ହେବା ପରେ କଂଗ୍ରେସ କାଉନ୍‌ସିଲରେ ପ୍ରବେଶ କରିବେ କି ନାହିଁ ସେ ପ୍ରଶ୍ନ ଛାଡି ଦେଲେ ରାଜ ଗୋପାଳ ଚାରୀ ଅଲ୍ଲି ଭ୍ରାତୃଦ୍ୱୟଙ୍କ ଉପରେ । ଅଲ୍ଲି ଭ୍ରାତୃଦ୍ୱୟ କଂଗ୍ରେସର ଦାୟିତ୍ୱ ଆଉ ମୁଣ୍ଡାଇବାକୁ ରାଜି ନଥିଲେ । ତଥାପି ସେମାନେ ଘୋଷଣା କଲେ ଯେ ମହାତ୍ମା ଗାନ୍ଧିଙ୍କ ଠାରୁ ସେମାନେ ସନ୍ଦେଶ ପାଇଛନ୍ତି କାଉନ୍‌ସିଲରେ ପ୍ରବେଶ କରିବା ପାଇଁ । ଗୟା କଂଗ୍ରେସ ଅଧିବେଶନ ଠାରୁ ରାଜ ଗୋପାଳ ଚାରୀ ଗାନ୍ଧିନୀତିର ପରିଚାଳକ ଥାଆନ୍ତି । ତେଣୁ ନିଜ ଇଚ୍ଛା ବିରୁଦ୍ଧରେ ଚିତ୍ତରଂଜନ ଓ ମୋତିଲାଲ୍‌ଙ୍କ ବିରୁଦ୍ଧରେ ଗଲେ । ଦିଲ୍ଲୀର କଂଗ୍ରେସ ନୀତି ନିର୍ଦ୍ଧାରଣକୁ ଗୋବିନ୍ଦଜୀ ଗ୍ରହଣ କରି ପାରିଲେ ନାହିଁ ଅର୍ଥାତ୍ କାଉନ୍‌ସିଲରେ ପ୍ରବେଶ । ତେଣୁ ସେ ଓଡିଶା ଫେରି ଆସିଲେ ।

ଓଡିଶା ଫେରି ସ୍ୱରାଜ୍ୟ ଆଶ୍ରମରେ ରହିଲେ । ଏହି ସ୍ୱରାଜ୍ୟ ଆଶ୍ରମର କଂଗ୍ରେସ ଅସହଯୋଗ ଆନ୍ଦୋଳନରେ ସ୍ୱତନ୍ତ୍ର ଭୂମିକା ଅଛି । କଂଗ୍ରେସ କମିଟି ଏହି ଆଶ୍ରମର ପରିଚାଳନା ଓ ପ୍ରସାର କରିବା ଭାର ଗୋବିନ୍ଦଜୀଙ୍କ ଉପରେ ଅର୍ପଣ କଲେ ।

ଗୋପବଂଧୁ ଦାସ ଉତ୍କଳ କଂଗ୍ରେସର ପ୍ରାଣ ପ୍ରତିଷ୍ଠାତା ଓ ଜନନାୟକ ଥିଲେ । ଗୋବିନ୍ଦଜୀ ତାଙ୍କୁ ନ ପଚାରି କିଛି କରିବାକୁ ଇଚ୍ଛା କରୁନଥିଲେ । ସେହିପରି ଆଉ

ଏକ ଆଶ୍ରମ ଜଗତ୍‌ସିଂହପୁରରେ ଭାଗିରଥୀ ମହାପାତ୍ର ଓ ଗୋପବଂଧୁ ଚୌଧୁରୀଙ୍କ ନେତୃତ୍ୱରେ ମୁଣ୍ଡ ଟେକି ଥିଲା ।

ସାବରମତୀ ଆଶ୍ରମରେ ଥିବା ବେଳେ ଗୋବିନ୍ଦଜୀ ଦେଖିଥିଲେ ଗୋପବଂଧୁ ଚୌଧୁରୀ ଯମୁନା ଲାଲ୍ ବଜାଜଙ୍କୁ ଚିଠି ଲେଖିଥିଲେ ସତ୍ୟବାଦୀ ବନ ବିଦ୍ୟାଳୟକୁ ପାଞ୍ଚ ହଜାର ଟଙ୍କା ଦେବା ବୃଥା । ତେଣୁ ତାକୁ ଅଲକା ଆଶ୍ରମକୁ ଦେବା ଶ୍ରେୟସ୍କର । କଟକରେ ସ୍ୱରାଜ୍ୟ ଆଶ୍ରମର ଗୋଟିଏ ସ୍ଥାୟୀ ଗୃହ ନିର୍ମାଣ ସକାଶେ ଗୋବିନ୍ଦଜୀ ଚେଷ୍ଟିତ ଥିଲେ । ଏଥିରେ ଯୁଦମଣି ମଙ୍ଗରାଜ ତାଙ୍କୁ ଉତ୍ସାହିତ କରିଥିଲେ ।

ମହାତ୍ମା ଗାନ୍ଧି ୟେରବାଡ଼ା ଜେଲରେ ଆପେଣ୍ଡିସାଇଟିସ୍ ଅପରେସନ ପରେ ଜେଲରୁ ଛାଡ ପାଇ ବମ୍ବେର ଜୁହୁଠାରେ ରହିଲେ । ଗୋବିନ୍ଦଜୀଙ୍କ ପତ୍ର ପାଇ ତାଙ୍କୁ ଡକାଇ ପଠାଇଲେ ଓ ସେ ମହାତ୍ମାଙ୍କ ସେବା କଲେ । ସେଠାରେ ଦୀନବଂଧୁ ଆଣ୍ଡ୍ରୁଜ ଓ ମହାତ୍ମା ଗାଂନ୍ଧିଙ୍କୁ କନିକା ଅତ୍ୟାଚାର କଥା କହିଲେ । ଓଡିଶା ଫେରିଯିବାକୁ ଇଛା କରିବାରୁ ମହାତ୍ମାଜୀ ତାହା ସେ ନିଜ ଇଛାରେ କରିପାରନ୍ତି କହିଲେ ମାତ୍ର ତାଙ୍କ ସାହାଯ୍ୟ ବା ଅର୍ଥ ପାଇବେ ନାହିଁ । ଜୁହୁ ଦ୍ୱୀପରେ ଦେଢ ମାସ ରହି ମହାତ୍ମାଙ୍କ ସେବା କରି ଆରୋଗ୍ୟ ଲାଭ ପରେ ଓଡିଶା ଫେରିଲେ ଗୋବିନ୍ଦଜୀ ।

ଓଡିଶା ପ୍ରାଦେଶିକ କଂଗ୍ରେସ ସମ୍ମିଳନୀରେ ଯୋଗ ଦେବାକୁ ବଙ୍ଗଳାରୁ ବୈଜ୍ଞାନିକ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଆସୁଥାନ୍ତି । ତାଙ୍କୁ ସ୍ୱାଗତ କରିବା ପାଇଁ କଟକ ଷ୍ଟେସନରେ ପଣ୍ଡିତ ଗୋପବଂଧୁ ଦାସ, ଭାଗିରଥୀ ମହାପାତ୍ର, ଗୋବିନ୍ଦଜୀ ପ୍ରଭୃତି ଉପସ୍ଥିତ ଥିଲେ । ପ୍ରଫୁଲ୍ଲ ଚନ୍ଦ୍ର ରାୟ ଗୋପବଂଧୁ ଦାସଙ୍କୁ କୁଣ୍ଢାଇ ପକାଇଲେ ।

ପ୍ରାଦେଶିକ ସମ୍ମିଳନୀରେ ଗୋପବଂଧୁ ବାବୁ ସଭାପତି ହେବା କଥା, ମାତ୍ର ଡାକ୍ତର ପ୍ରଫୁଲ୍ଲ ଚନ୍ଦ୍ର ରାୟ ହେବାରୁ ଗୋବିନ୍ଦଜୀଙ୍କ ମନ ଦୁଃଖ ହେଲା । ଏହି ସମ୍ମିଳନୀରେ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଗୋପବଂଧୁ ଦାସଙ୍କୁ 'ଉତ୍କଳମଣି'ରେ ଆଖ୍ୟାୟିତ କରିଥିଲେ । ଗୋପବଂଧୁ ବାବୁ ସୁଯୋଗ ପାଇଥିଲେ ସାରା ଭାରତ ପାଇଁ ବହୁତ କାମ କରି ପାରିଥାନ୍ତେ ।

ସ୍ୱରାଜ୍ୟ ଆଶ୍ରମରେ କଂଗ୍ରେସ କମିଟିର ପ୍ରଥମ ବୈଠକ ବସିଥାଏ । ଜ୍ୱର ସତ୍ତ୍ୱେ ଗୋପବଂଧୁ ଦାସ ଏଥିରେ ଉପସ୍ଥିତ ଥାଆନ୍ତି । ଗୋପବଂଧୁ ଦାସ କିଛି କହିଲେ କିଛି ନ ଶୁଣିବା ପରି ଗୋପବଂଧୁ ଚୌଧୁରୀ ଉଠି ଯାଆନ୍ତି । ତାଙ୍କର

ଚାକର ଗୋପବଂଧୁ ଦାସଙ୍କ ବିଜ୍ଞାପତ୍ର ଆଣି ସ୍ୱରାଜ୍ୟ ଆଶ୍ରମରେ ଦେଇ ଚାଲଗଲା । ଏଥିରୁ ବ୍ୟକ୍ତିଗତ ଅସୂୟା ପ୍ରକାଶିତ ହେଲା ଓ ମିଳିମିଶି କାର୍ଯ୍ୟ କରିବା ସ୍ପୃହା ନଥିଲା ।

ଏହି କଂଗ୍ରେସ କମିଟିରେ କନିକା ଅତ୍ୟାଚାର କଥା ଗୋବିନ୍ଦଜୀ ବର୍ଣ୍ଣନା କଲେ । ସମସ୍ତ ସଭା ଦୁଃଖରେ ଜର୍ଜ୍ଜରିତ ହୋଇ ଉଠିଲା । କନିକା ପାଇଁ ଗୋଟିଏ ତଦନ୍ତ କମିଟି କରିବା ସ୍ଥିର ହେଲା । ସେଥିରେ ସଭ୍ୟ ରହିଲେ ଡକ୍ଟର ହରେକୃଷ୍ଣ ମହତାବ, ପଣ୍ଡିତ ଲାଙ୍ଗରାଜ ମିଶ୍ର ଓ ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର । ଗୋବିନ୍ଦଜୀ ଭଦ୍ରକ ଗଲେ । ଲିଙ୍ଗରାଜ ମିଶ୍ର କୌଣସି କାରଣ ବଶତଃ ଆସି ପାରିଲେ ନାହିଁ । କନିକାର କର୍ମୀ ମାନେ ଆସିଥାନ୍ତି । ମାତ୍ର ହରେକୃଷ୍ଣ ମହତାବ ତାଙ୍କୁ କ'ଣ ବୁଝାଇ ଦେଲେ କେଜାଣି ସେଇଥିରେ କନିକା ତଦନ୍ତ ସରିଗଲା । ଅତୀତରେ ଏହିପରି ଅନେକ ତଦନ୍ତ କମିଟିର ଅବସ୍ଥା ହୋଇଛି । ତେଣୁ ଗୋବିନ୍ଦଜୀ ଭଦ୍ରକରୁ ସ୍ୱରାଜ୍ୟ ଆଶ୍ରମ ଫେରି ଆସିଲେ ।

## ଓଡିଶାରେ ବିଭିନ୍ନ କାର୍ଯ୍ୟ

ଗଂଜାମ ଓଡିଶାରେ ମିଶିବା ପାଇଁ ଗୋବିନ୍ଦଜୀ ଗଂଜାମ ଗଲେ । ତେଲଗୁ ଅଞ୍ଚଳରେ ରହି ଓଡିଆଙ୍କ ନିଜତ୍ୱ ନଥିଲା । ଓଡିଆ ବୋଲି ଜନ୍ମ ପତ୍ରିକାରେ ପୁରୀ ରାଜାଙ୍କ ଅଙ୍କ ଦେଖି ଦସ୍ତଖତ୍ କରାଇ ଡଫ୍ ଫିଲ୍‌ପ କମିଶନଙ୍କୁ ଦେଲେ । ଏଥିପାଇଁ ତାଙ୍କୁ ଗଂଜାମ ଗ୍ରାମେ ଗ୍ରାମେ ବୁଲିବାକୁ ପଡିଥିଲା । ବେଲଗାଁଓରେ କଂଗ୍ରେସ ଅଧିବେଶନ ବସିଲା । ଏଥିରେ ମହାତ୍ମା ଗାନ୍ଧି ଯୋଗ ଦେଲେ । ଗୋପବଂଧୁ ଦାସଙ୍କ ସହ ଗୋବିନ୍ଦଜୀ ବେଲଗାଁଓ ଗଲେ । ଏହି ଅଧିବେଶନରେ ମହାତ୍ମାଜୀ କଂଗ୍ରେସର ସଭ୍ୟ ହେବା ନିୟମ ବଦଳାଇ ଦେଲେ ଯେ ଚାରିଅଣା ବଦଳରେ ଦୁଇ ହଜାର ହାତ କଟା ସୂତା ଦେବେ । ସ୍ୱରାଜ୍ୟବାଲାଙ୍କ ସହ ଅସହଯୋଗୀ କଂଗ୍ରେସ ବାଲାଙ୍କ ମନାନ୍ତର ମେଣ୍ଟାଇ ଦେଲେ ଅସହଯୋଗୀଙ୍କ ମତାନ୍ତର ସତ୍ତ୍ୱେ ।

ଓଡିଶା ଆସି ଗୋବିନ୍ଦଜୀ ପୁରୀ ଜିଲ୍ଲାର ସାରଙ୍ଗଯୋଡି ଗ୍ରାମର ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ଏକ ସେବା ସଂଘରେ ଯୋଗ ଦେଲେ । ଏଥିରେ ଜଗନ୍ନାଥ ରଥ ଓ ସତ୍ୟବାଦୀ ନନ୍ଦ ସଭ୍ୟ ଥିଲେ । ଉଦ୍ଦେଶ୍ୟ ଥିଲା ପୁରୀ ଜିଲ୍ଲାରେ ରାଜନୈତିକ ସମ୍ମିଳନୀ ଗଢି ପ୍ରତି ଗ୍ରାମରେ ଶିକ୍ଷା ଓ ସ୍ୱାସ୍ଥ୍ୟ ବିଷୟରେ କାର୍ଯ୍ୟ କରିବେ । ପୁରୁଷୋତ୍ତମପୁର ଶାସନ ନରହରି ମିଶ୍ରଙ୍କ ଗ୍ରାମରେ ସେବା ସମିତି

ଗଢିବା ସ୍ଥିର ହେଲା । ପ୍ରଥମ ସେବା ସ୍ୱରୂପ ସେଇ ଗ୍ରାମରେ ଦଳ ସଙ୍ଗେଇ ପାଇଁ ଯୁବକ ମାନଙ୍କୁ ଆହ୍ୱାନ ଦେଲେ । ୪/୫ ଜଣ କର୍ମୀ ବାହାରିଲେ ମାତ୍ର ଯାହାଙ୍କ ଘର ସାମନାରେ ଦଳ ସଙ୍ଗ ହେବା କଥା ତାଙ୍କର ବିରୋଧ ହେତୁ ଦଳ ସଙ୍ଗେଇ ହୋଇ ପାରିଲାନି । ଏଥିରୁ ଗୋବିନ୍ଦଜୀ ହୃଦୟଙ୍ଗମ କଲେ ପଲ୍ଲିଗ୍ରାମରେ ସେବାକାର୍ଯ୍ୟ କରିବା କେତେ କଷ୍ଟ ।

ତେଣୁ ସେ କୃପାସିନ୍ଧୁଙ୍କ ସାଙ୍ଗ ଛାଡି ଖଦି କାର୍ଯ୍ୟ ପାଇଁ ପୁରୀ ଜିଲ୍ଲାରୁ କଟକ ଫେରି ଆସିଲେ । କଟକରେ ଗୋପାଳ ପ୍ରହରାଜଙ୍କ ଘରେ ରହିଲେ । କାରଣ ସ୍ୱରାଜ୍ୟ ଆଶ୍ରମରେ କିଲ୍ଲା କମିଟିର ସଦସ୍ୟ ମାନେ ଏହାର ମାଲିକ ହୋଇଗଲେ । ଗୋପାଳ ପ୍ରହରାଜ ଦୁଇ ହଜାର କଟା ସୂତା ଦେଇ କଂଗ୍ରେସର ସଭ୍ୟ ହେଲେ ।

ସ୍ୱରାଜ୍ୟ ଦଳ ବାଲା ବଡଲାଟଙ୍କ କାଉନ୍‌ସିଲରେ ପଶି ଗୋଳମାଳ କରିବାରୁ ସରକାର ଦମନ ନୀତି ଗ୍ରହଣ କଲେ । ମହାତ୍ମା ଗାନ୍ଧି କଲିକତା ଆସି ବେଲଗାଁଓର ସିଦ୍ଧାନ୍ତ ବଦଳାଇ ପାଟଣା କଂଗ୍ରେସ କମିଟିରେ ଖଦଡ ସୂତା ବା ଚାରିଅଣା ଦେଇ କଂଗ୍ରେସ ସଭ୍ୟ ହେବା ନିୟମ କଲେ ।

ଗୋପବଂଧୁ ଦାସ ସତ୍ୟବାଦୀରୁ ପୁରୀ ଆସି ସେଠାରେ ପ୍ରେସ ସ୍ଥାପନ କଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ଓ ପଣ୍ଡିତ ନୀଳକଣ୍ଠ ଦାସ ଗୋପବଂଧୁଙ୍କୁ ସହଯୋଗ କଲେ ନାହିଁ । ପଣ୍ଡିତ କୃପାସିନ୍ଧୁ ମିଶ୍ର ମଧ୍ୟ ସତ୍ୟବାଦୀ ସ୍କୁଲକୁ ଉଚ୍ଚ ଇଂରାଜି ବିଦ୍ୟାଳୟ ପରିଣତ କରିବା ପାଇଁ ପାଟଣା ବିଶ୍ୱ ବିଦ୍ୟାଳୟ ନିକଟରେ ଆବେଦନ କଲେ । ମାତ୍ର କଂଗ୍ରେସ କର୍ମୀ ମାନେ ସହଯୋଗ କଲେ ନାହିଁ । ଏଥିରେ ଗୋପବଂଧୁ ଦାସ ବିବ୍ରତ ହୋଇ ପଡିଲେ । ଗୋବିନ୍ଦଜୀଙ୍କ ସମ୍ବନ୍ଧରେ ମହାତ୍ମା ଗାନ୍ଧିଙ୍କର ଏକ ନୈରାଶ୍ୟଜନକ ଚିଠି ନିରଂଜନ ପଟ୍ଟନାୟକଙ୍କୁ ଲିଖିତ ଗୋପବଂଧୁ ଦାସଙ୍କ ପାଖରୁ ପାଇଲେ । ଏଥିରେ ଗୋବିନ୍ଦଜୀଙ୍କ ମନ ଭାଙ୍ଗି ପଡିଲା । କାରଣ ମହାତ୍ମା କଠିନ କର୍ମବାଦୀ ଥିଲେ । ଓଡିଶାରେ କଂଗ୍ରେସ କାର୍ଯ୍ୟ ପାଇଁ ପରିସ୍ଥିତି ଅନୁକୂଳ ନଥିଲା । ଏହି ବାସ୍ତବ ସତ୍ୟକୁ ମହାତ୍ମାଜୀ ବିଶ୍ୱାସ କରିବାକୁ ଚାହୁଁ ନଥିଲେ । ଯଥା ଅର୍ଥାଭାବ ଓ କର୍ମୀର ଅଭାବ ।

ଗୋପବଂଧୁ ବାବୁଙ୍କ ପରାମର୍ଶ କ୍ରମେ ଶାନ୍ତି ନିକେତନ ଛାତ୍ରଙ୍କ ପ୍ରଦତ୍ତ ପଚାଶ ଟଙ୍କା ଧରି କୌଣସି ପଲ୍ଲିଗ୍ରାମକୁ ଯାଇ କାମ କରିବାକୁ ସ୍ଥିର କଲେ । ୧୯୨୩ରେ ବମ୍ବେର ବଂଧୁମାନେ ପଠାଇଥିବା ଏକ ହଜାର ଟଙ୍କାରେ ନିଜ ଖର୍ଚ୍ଚ ଛଡା କେତୋଟି ବହି, "ଗୀତା ଓ ସ୍ୱରାଜ୍ୟ" ଏବଂ. କାରାଗାର କାହାଣୀ ଓ

୧୯୨୧ରେ 'ଗାନ୍ଧିଜୀଙ୍କ ଜୀବନ ଚରିତ' ଏବଂ 'ସତ୍ୟବାଣୀ' ଛପାଇଲେ। ଲୋକମାନେ ପସନ୍ଦ କଲେ ମଧ୍ୟ ଭଲ ବିକ୍ରୀ ହୋଇ ପାରିନଥିଲା।

ନିଜର ଦୁଇ ଶହ ଟଙ୍କା ଓ ଗୋପବଂଧୁ ବାବୁ ଦେବା ୫୦ ଟଙ୍କା ଧରି ସେ କଟକ ଜିଲ୍ଲାର ଚ଼ମ୍ପାପୁର ହାଟ ନିକଟସ୍ଥ ସ୍ଥାନକୁ ନିଜର କର୍ମ କ୍ଷେତ୍ର ରୂପେ ବାଛି ନେଲେ।

ଅସହଯୋଗ ଆନ୍ଦୋଳନ ସମୟରେ ସେ ସଦର ସବ୍‌ଡିଭିଜନ୍‌ର କାର୍ଯ୍ୟ ପରିଚାଳନା ଓ ସଭାସମିତି କରିଥିଲେ। ଚମ୍ପାପୁର ହାଟ ନିକଟ ବଉଲା ମଠରେ, କେତେ ଜଣ କର୍ମୀ କାର୍ଯ୍ୟ କରୁଥିଲେ। ୧୯୨୨ରେ ଏଠାରେ ସୂତାକଟା କେନ୍ଦ୍ର ସ୍ଥାପିତ ହୋଇଥିଲା। ମଉଦା ଜମିଦାର ଶ୍ରୀଆର୍ତ୍ତତ୍ରାଣ ମିଶ୍ରଙ୍କ ପୁଅ ଉପେନ୍ଦ୍ର ଗୋବିନ୍ଦ ବାବୁଙ୍କର ସହପାଠୀ ଥିଲେ ମିଶନ ସ୍କୁଲ୍‌ରେ। ଜମିଦାର ଗୋବିନ୍ଦ ବାବୁଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ। ମଉଦା ଜମିଦାର ଜଣେ ଜାତୀୟବାଦୀ ଥିଲେ। ତେଣୁ ସରକାରୀ ସୁବିଧା ଓ ସାହାଯ୍ୟରୁ ବଞ୍ଚିତ ହୋଇଥିଲେ। ଚାକିରୀ ମଧ୍ୟ କରି ପାରି ନଥିଲେ। ମଉଦା ଜମିଦାର ଜଣେ ଜାତୀୟ ବାଦୀ ଥିଲେ। ତେଣୁ ସରକାରୀ ସୁବିଧା ଓ ସାହାଯ୍ୟରୁ ବଞ୍ଚିତ ହୋଇଥିଲେ। ଚାକିରୀ ମଧ୍ୟ କରି ପାରି ନଥିଲେ। ଗୋବିନ୍ଦ ବାବୁ କୌଣସି ସ୍ଥାନରେ ସ୍ଥାୟୀ ଅନୁଷ୍ଠାନ ଗଢି ରହିବାକୁ ଚାହୁଁଥିଲେ। ତେଣୁ ମଉଦା ଜମିଦାର ତାଙ୍କ ଜମିଦାରୀ ଅନ୍ତର୍ଗତ କଇଆ ମୌଜାରେ ତାଙ୍କର କଚେରୀ ଘରଟିକୁ ଦେଲେ।

ଏକ ମହଣ ତୁଳା, ୨/୪ ଖଣ୍ଡ ଅରଟ ଓ ଦେଡଶହ ଟଙ୍କା ଧରି ଆସି ଏହି କଚେରୀ ଘରେ ରହିଲେ। ଚାରିଆଡେ ଜଂଗଲିଆ, ଉଇହୁଙ୍କା, ସାପ ଘର ଭିତରେ ରୁହନ୍ତି। ଅରଟରେ ସୂତା କାଟନ୍ତି, ହାତରେ ରୋଷେଇ କରି ଖାଆନ୍ତି। ତୁଳା ଦେଇ ସୂତା କଟାଇ କଟକ ନିଅନ୍ତି ବିକ୍ରି କରିବାକୁ। ବିକ୍ରୀ ହେଲେ ପୁଣି କାମ ଚାଲେ। ଲୋକଙ୍କ ସଂସ୍ପର୍ଶରେ ଆସି ଗ୍ରାମ୍ୟ ଜୀବନ କ'ଣ ସେ ଜାଣିଲେ। ଧନୀ, ଜମିଦାରୀଙ୍କ ଦାଉରେ ପଲ୍ଲିଜୀବନ ମ୍ରିୟମାଣ। ଲୋକଙ୍କର ପଦେ କଥା କହିବାକୁ ସାହସ ନାହିଁ। ଏହି ଧନୀ, ଜମିଦାରମାନେ କଂଗ୍ରେସ କର୍ମୀଙ୍କୁ ନୀଚ, ସ୍ୱାର୍ଥପର, ବେକାର, ଠକ ଇତ୍ୟାଦି କହି ବଦନାମ କରାନ୍ତି। ତା'ଛଡା ଧର୍ମ କହିଲେ ଲୋକମାନେ, ପୂଜା, ଭୋଗ, ଠାକୁର, ଠାକୁରାଣୀ, ମୁଣ୍ଡିଆ ମାରିବା, ତୁଳସୀ ପାଇବା ବୁଝନ୍ତି। ଲୋକମାନଙ୍କ ମଧ୍ୟରେ ଯେଉଁ ପ୍ରଚଳିତ ବିଶ୍ୱାସ ଅଛି ତା ବିରୁଦ୍ଧରେ ବିଦ୍ରୋହ ନ କଲେ ଗ୍ରାମ ସଂଗଠନ ହୋଇ ପାରିବ ନାହିଁ ବୋଲି ସେ

ବୁଝିଲେ । ଓଡିଶାର ରାଜନୈତିକ ଜୀବନ ପଣ୍ଡିତ ଗୋପବଂଧୁ ଦାସ ଓ ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର ପ୍ରଭୃତିଙ୍କ ଠାରୁ ଆରମ୍ଭ କହିଲେ ଚଳେ ।

୧୯୨୫ ମସିହା ଜୁନରୁ ଖଦଡ କାମ ଆରମ୍ଭ ହୋଇଥିଲା । ଶୀତଋତୁରେ ମେଲେରିଆ ଦେଖା ଦେବାରୁ ଖଦଡ କାମ ଛାଡି ରୋଗୀ ସେବା କାର୍ଯ୍ୟରେ ଲାଗିଲେ । ସେବା କାର୍ଯ୍ୟ ହେବାରୁ ଲୋକ ଆସିଲେ । ଏଠାରେ ସ୍କୁଲ ନଥିଲା । ଲୋକାଲ ବୋର୍ଡକୁ ଧରି ମାସିକ ଟ୭/- ସାହାଯ୍ୟ ପାଇଲେ । ଦରମା ଦେଇ ଜଣକୁ ରଖିବାକୁ ପଡିବ । ତେଣୁ କଟକ ଯାଇ ମାସକୁ ବାରଟଙ୍କା ଯୋଗାଡ କରି ଆସିଲେ । ସାହାଯ୍ୟକାରୀ ମାନେ ଥିଲେ ବାବୁ ଗୋପାଳ ଚନ୍ଦ୍ର ପ୍ରହରାଜ, ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ବାବୁ ସତ୍ୟନାରାୟଣ ସେନଗୁପ୍ତ । ବୃନ୍ଦାବନ ଷଡଙ୍ଗୀଙ୍କୁ ବାରଟଙ୍କା ଦେଇ ନିଯୁକ୍ତି କଲେ ଆଗରୁ ସେ ଖଦି କାମ ଜାଣିଥିଲେ । ଖଦି ବିକ୍ରୀ, ଚନ୍ଦା ସଂଗ୍ରହ ଓ ରୋଗୀ ସେବା ଇତ୍ୟାଦି କାର୍ଯ୍ୟ ନିଜେ କଲେ । ଅତିଥି ସତ୍‌କାର, ରୋଗୀ ପଥ୍ୟ ବାବଦ ଖର୍ଚ୍ଚ ପାଇଁ ଅର୍ଥ ଅଭାବ ହେଲେ ସମୟ ସମୟରେ ଉପବାସ ରହିବାକୁ ପଡେ ।

ଡିସେମ୍ବର ମାସରେ ସରୋଜିନୀ ନାଇଡୁଙ୍କ ସଭାପତିତ୍ୱରେ କଂଗ୍ରେସ ଅଧିବେଶନ ବସୁଥାଏ କାନପୁରରେ । ସେଠାକୁ ଯାଇ ମହାତ୍ମାଗାନ୍ଧିଙ୍କୁ ସାହାଯ୍ୟ କଥା କହିଲେ । ତାଙ୍କଠାରୁ ନିରାଶାବାଣୀ ଶୁଣି ବମ୍ବେ ଗଲେ ଓ ବମ୍ବେରୁ ଅହମ୍ମଦାବାଦ ଯାଇ ପୁଣି ଗାନ୍ଧିଜୀଙ୍କୁ ଅର୍ଥ ସାହାଯ୍ୟ କଥା କହିଲେ । ଗାନ୍ଧିଜୀ ନିଜ ଗୋଡରେ ଠିଆ ହେବାକୁ ଉପଦେଶ ଦେଲେ ଓ ସାର୍ଟିଫିକେଟ୍ ଦେଲେ ନାହିଁ । ବମ୍ବେରୁ କିଛି ବଂଧୁଙ୍କଠାରୁ ଦୁଇ ହଜାର ଟଙ୍କା ସାହାଯ୍ୟ ଧରି କର୍ମକ୍ଷେତ୍ରକୁ ଫେରିଲେ । ମାସକୁ ଆଠଟଙ୍କା ଦେଇ ଆଉ ଜଣକୁ ନିଯୁକ୍ତ କଲେ ।

ଦେଶ ସେବା ପାଇଁ ଯୁବକ ମାନଙ୍କୁ ତାଲିମ ଦେବାକୁ ସେ ଏକ ଯୋଜନା ପ୍ରସ୍ତୁତ କଲେ । ମହାତ୍ମା ଗାନ୍ଧିଙ୍କ ଆଦର୍ଶରେ ଏକ ସେବାଶ୍ରମ ଗଢିବାକୁ ସେ ମନରେ ସଂକଳ୍ପ କଲେ । ତେଣୁ ଚମ୍ପାପୁର ଠାରେ ଏହି କର୍ମକେନ୍ଦ୍ରର ନାମ ହେଲା "ଗାନ୍ଧି ସେବାଶ୍ରମ" । ସେଥିପାଇଁ ସାଧାରଣ ଲୋକଙ୍କୁ ଅବଗତ କରିବା ପାଇଁ ଏକ ସଭା ଡାକିଲେ । ସେଥିରେ ଯୋଗ ଦେବାକୁ କଂଗ୍ରେସ ନେତା ତଥା କର୍ମୀମାନଙ୍କୁ ନିମନ୍ତ୍ରଣ କଲେ । ଏଥିରେ କେବଳ ରାଜକୃଷ୍ଣ ବୋଷ, ଗୋପାଳ ଚନ୍ଦ୍ର ପ୍ରହରାଜ ଓ ସତ୍ୟ ନାରାୟଣ ସେନଗୁପ୍ତ ଯୋଗ ଦେଇଥିଲେ । ଜନସାଧାରଣଙ୍କୁ ଆୟବ୍ୟୟର ହିସାବ ଦେଖାଇଲେ ଏବଂ ଏହାକୁ ଗୌହାଟୀ କଂଗ୍ରେସରେ ମହାତ୍ମା ଗାନ୍ଧିଙ୍କୁ

ଦେଖାଇ ଥିଲେ । ସେଥିରେ ଓଡିଶାର କାର୍ଯ୍ୟ କରିବା କଥା ଥିଲା । ମହାତ୍ମା ଗାନ୍ଧିଙ୍କ ମନୋଭାବକୁ ଏ ରିପୋର୍ଟ ପ୍ରଭାବିତ କରି ପାରିଲା ନାହିଁ । ତେଣୁ ଓଡିଶାରେ ଏକ ମାସ ରହି ବ୍ୟବସ୍ଥା ଦେଖିବାକୁ ମହାତ୍ମା ଗାନ୍ଧିଙ୍କୁ ନିମନ୍ତ୍ରଣ କଲେ । ସ୍ଥିର ହେଲା ୧୯୨୭ ନଭେମ୍ବର ୧୫ ଠାରୁ ଏକ ମାସ ଓଡିଶାରେ ମହାତ୍ମାଜୀ ରହିବେ ।

ମହାତ୍ମାଜୀ ଗୋବିନ୍ଦ ବାବୁଙ୍କୁ କୌଣସି ପ୍ରକାରେ ବା କାହା ଦ୍ୱାରା ଆର୍ଥିକ ସାହାଯ୍ୟ ପାଇଁ ରାଜି ହେଲେ ନାହିଁ । ତେଣୁ ଗୋବିନ୍ଦ ବାବୁ ବମ୍ବେରେ ଥିବା ନିଜ ବଂଧୁଙ୍କଠାରୁ ବଦାନ୍ୟ ବ୍ୟକ୍ତିଙ୍କର ଠିକଣା ସଂଗ୍ରହ କରି ତାଙ୍କ ପାଖକୁ ଯାଆନ୍ତି ଏବଂ ସାହାଯ୍ୟ ଗ୍ରହଣ କରନ୍ତି । ତାପରେ ରେଙ୍ଗୁନ ଯାଇ ସାହାଯ୍ୟ ସଂଗ୍ରହ କରି ଚାରି ହଜାର ଟଙ୍କା ଧରି ଓଡିଶା ଫେରିଲେ ।

ଚମ୍ପାପୁର ସେବାଆଶ୍ରମରେ ବୃନ୍ଦାବନ ଷଡଙ୍ଗୀଙ୍କ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ତାଙ୍କୁ ବାହାର କରି ଦେଲେ ଏବଂ ବିଶ୍ୱନାଥ ମିଶ୍ରଙ୍କୁ ନିଯୁକ୍ତ କଲେ । ଆଶ୍ରମଠାରୁ ୬ ମାଇଲ ଦୂର କଟରପାଠାରେ ଗୋଟିଏ ସୂତାକଟା କେନ୍ଦ୍ର ସ୍ଥାପନ କଲେ । ସେଠାରେ କୃଷ୍ଣ ରାଉତଙ୍କୁ ରଖିଲେ । କପାସଷ୍ଠିରେ ହଇଜା ଲାଗିଥିବା ସମୟରେ ଲୋକଙ୍କ ମନୋବଳ ଦୃଢ କରିବା ପାଇଁ ସେଠାରେ ରହିଲେ । ସେମାନଙ୍କର ସେବା କଲେ । ସେହିପରି ଚମ୍ପାପୁର ଗ୍ରାମରେ ଏକ ଚୋରି କେଶ୍‌ରେ ପୋଲିସର ଅତ୍ୟାଚାର ଓ ଜୁଲମ ବିରୁଦ୍ଧରେ କେଶ୍ କରି ଗ୍ରାମବାସୀଙ୍କର ଜୟ କରାଇଥିଲେ ନିଜ ହାତରୁ ୩ ଶହ ଟଙ୍କା ଖର୍ଚ୍ଚ କରି ।

ସେତେବେଳେ ସମାଜରେ ଲୋକମାନଙ୍କର ଧନୀ ତଥା ଜମିଦାରଙ୍କ ପ୍ରତି ଖାତିର ଥିଲା କାରଣ ବିପଦ ଆପଦରେ ସେମାନେ ସେମାନଙ୍କ ପାଖକୁ ଯାଉଥିଲେ । ଜଣେ ଦେଶସେବକକୁ ସାହାଯ୍ୟ ପାଇଁ ଯିବା ଆଶା କରିବା ସହଜ ନ ଥିଲା । ଏତଦ୍‌ବ୍ୟତୀତ ଏହି ଧନୀ, ଜମିଦାରମାନେ ଗୋବିନ୍ଦ ବାବୁଙ୍କ ବିରୁଦ୍ଧରେ ଲାଗିଲେ ଯେପରି ସେ ଏଠୁ ଛାଡି ପଳାଇବେ ଓ ସାଧାରଣ ଲୋକେ ଯେମିତି ଥିଲେ ସେମିତି ରହିବେ । ତେଣୁ ସେ ଗ୍ରାମ ସଂଗଠନରେ ମନ ପ୍ରାଣ ଢାଳି ଦେଲେ । ସେଥିପାଇଂ ଗୋଟିଏ ସ୍ଥାୟୀ ପକ୍କାଘରର ଆବଶ୍ୟକତା ଥିଲା ।

ମହାତ୍ମା ଓଡିଶା ଗ୍ରସ୍ତ କାର୍ଯ୍ୟରେ ପ୍ରସ୍ତାବିତ ନଭେମ୍ବର ୧୫ ପରିବର୍ତ୍ତନରେ ଡିସେମ୍ବର ୨୦ରେ ଆନ୍ଧ୍ର ଦେଇ ଓଡିଶା ଆସିଲେ । ତାଙ୍କର କାର୍ଯ୍ୟକ୍ରମ ନିରଂଜନ ପଟ୍ଟନାୟକ ସ୍ଥିର କରୁଥାନ୍ତି । ସେଥିରେ ଗୋବିନ୍ଦଜୀଙ୍କ ଆଶ୍ରମ ପରିଦର୍ଶନ କାର୍ଯ୍ୟକ୍ରମ ନଥାଏ । ତଥାପି ଗୋବିନ୍ଦ ବାବୁ ମହାତ୍ମା ଗାନ୍ଧିଙ୍କୁ ଖୋରଧା ଠାରେ

ସାକ୍ଷାତ କଲେ । ମହାତାଜୀଙ୍କ ସହିତ ମହାଦେବ ଦେଶାଇ ଓ କାକା କାଲେଲକର ଥାଆନ୍ତି । ସେମାନେ ଗ୍ରସ୍ତ ପଥରେ ନୟାଗଡର ଇଟାମାଟିରେ କେତେକ ଲୋକଙ୍କ ଘରେ ପଶି ଘର, ବାହାର ଓ ବାସନକୁସନ ପରିଷ୍କାର ପରିଚ୍ଛନତା ଦେଖି ଭାବ ବିହ୍ୱଳ ହୋଇ ପଡିଥିଲେ। ମହାତ୍ମାଜୀ ପୁରୀରୁ ବାଲେଶ୍ୱର ଗଲେ। ଗୋବିନ୍ଦ ବାବୁ ଆଶ୍ରମର ଶୁଭ ଦେବାପାଇଁ ଫେରି ଆସିଲେ।

ମହାତ୍ମାଜୀ ବାଲେଶ୍ୱରରୁ କଟକ ଆସିଲେ ଏବଂ ତାଙ୍କୁ ଗୋବିନ୍ଦ ବାବୁ ଗୋପାଳ ଚନ୍ଦ୍ର ପ୍ରହରାଜହ୍କ ଘରେ ରଖାଇଲେ । ସେ ଅସୁସ୍ଥ ଥାଆନ୍ତି । ସେଠାରେ ମହାତ୍ମାଜୀଙ୍କୁ ଆଶ୍ରମର ନକ୍ସା ଦେଖାଇଲେ ଏବଂ ତାଙ୍କଠାରୁ ଲିଖିତ ବାର୍ତ୍ତା ନେଇ ଗଲେ। ସେ ଗଲେ ଲୋକଙ୍କର ଅସମ୍ଭବ ଭିଡ ହେବା ଦୃଷ୍ଟିରୁ ଅସୁସ୍ଥ ଅବସ୍ଥାରେ ମୀରାବେନ୍‌ଙ୍କୁ ଆଶ୍ରମର ଶୁଭ ଦେବାପାଇଁ ପଠାଇଲେ। କଟକରୁ ମାନ୍ଦ୍ରାଜରେ କଂଗ୍ରେସ ଅଧିବେଶନରେ ଯୋଗ ଦେବାପାଇଁ ଗଲେ।

ଗୋବିନ୍ଦ ବାବୁ ବମ୍ବେର ଭଚ୍ଚି ମାନଙ୍କଠାରୁ ଆଠ ହଜାର ଟଙ୍କା ସଂଗ୍ରହ କରି ଆଶ୍ରମ ଫେରିଲେ। ଆଶ୍ରମରେ କୃଷ୍ଣ ରାଉତଙ୍କ କାର୍ଯ୍ୟରେ ଅସନ୍ତୁଷ୍ଟ ହେବାରୁ ତାଙ୍କୁ ବିଦାୟ ଦେଲେ। ତାଙ୍କ ପରିବର୍ତ୍ତେ କଟରପାର ଚିନ୍ତାମଣି ଭୂୟାଁଙ୍କୁ ରଖାଇଲେ। ବିଶ୍ୱନାଥ ମିଶ୍ର ହିସାବ ପତ୍ରରେ ଖିଲାଫ କରିଥିବାରୁ ଆଶ୍ରମ ଛାଡି ପଳାଇଲେ। ତାଙ୍କ ସ୍ଥାନରେ ରୁଦ୍ରପୁରର ରଘୁନାଥ ପଣ୍ଡାଙ୍କୁ ନିଯୁକ୍ତ କଲେ। ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଥିଲେ। ତାଙ୍କୁ ସତ୍ୟବାଦୀରେ ଥିବା ରିଲିଫ୍ ଓ ଖଦି କେନ୍ଦ୍ରକୁ ପଠାଇ ଦେଲେ। ତାପରେ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପଡିହାରୀ ଚମ୍ପାପୁର ଆଶ୍ରମର ପରିଚାଳନା ଭାର ଗ୍ରହଣ କଲେ ଅଳକା ଆଶ୍ରମ ଭାଙ୍ଗି ଯିବା ପରେ।

ଯାଜପୁର ଜିଲ୍ଲାର ଭାକୁଡ ଗ୍ରାମ ପ୍ରତିବର୍ଷ ବନ୍ୟାରେ ଧୋଇ ହୋଇଯାଏ। ସେଥିପାଇଁ ଗାଁରେ ପଣ୍ଡିତ ଗୋପବଂଧୁ ଦାସ ଗୋଟିଏ ସଭା କଲେ ଏବଂ ନଦୀ ବନ୍ଧ କାର୍ଯ୍ୟ ପାଇଁ ଗୋବିନ୍ଦ ବାବୁଙ୍କ ସାହାଯ୍ୟ ଲୋଡିଲେ। ଏ ଅଞ୍ଚଳର ଜମିଦାର କାର୍ତ୍ତିକ ଚନ୍ଦ୍ର ପାଳ ଓ ଗୌର ଚନ୍ଦ୍ର ପାଳ ଓ ନରସିଂହ ମିଶ୍ର ଗୋବିନ୍ଦ ବାବୁଙ୍କ ସହିତ ଚାନ୍ଦା ଆଦାୟ କାର୍ଯ୍ୟରେ ସାହାଯ୍ୟ କଲେ। ମାତ୍ର କେତେକ ଲୋକ ସମାଲୋଚନା ଓ ଅସହଯୋଗ କରିଥିଲେ। ଶେଷରେ ଗୋବିନ୍ଦ ବାବୁ ଆଶ୍ରମ ଫଣ୍ଡରୁ ଚାଳିଶ ଟଙ୍କା ନରସିଂହ ମିଶ୍ରଙ୍କୁ ନେଇ ଚମ୍ପାପୁର ଆଶ୍ରମ ଚାଲି ଆସିଲେ।

ପଣ୍ଡିତ ଗୋପବଂଧୁ ଦାସ ପୀଡିତ ହୋଇ ଇହଧାମ ତ୍ୟାଗ କରିବାର ଖବର ପ୍ରାଣକୃଷ୍ଣ ପଡିହାରୀ ଦୁଇ ଦିନ ପରେ ଦେଲେ । ଏଥିରେ ଗୋବିନ୍ଦ ବାବୁ ଭାଙ୍ଗି ପଡିଲେ । ତାଙ୍କ ଉଦ୍ଦେଶ୍ୟରେ ଓଡିଶାରେ ଅନେକ ଶୋକ ସଭା ଅନୁଷ୍ଠିତ ହୋଇଥିଲା । ଗୋବିନ୍ଦ ବାବୁଙ୍କ ପ୍ରସ୍ତାବ ପୁରୀରେ "ଗୋପବଂଧୁ ହାସ୍‌ପାତାଳ" କରିବା ଗୃହୀତ ହେଲା ନାହିଁ । ମାତ୍ର ପ୍ରାଦେଶିକ କଂଗ୍ରେସ କମିଟି ଗୋପବଂଧୁ ଚୌଧୁରୀଙ୍କ "ଗୋପବଂଧୁ କର୍ମଶାଳା" ନାମରେ ଏକ ବୈଷୟିକ ଶିକ୍ଷା କେନ୍ଦ୍ର ସ୍ଥାପନ କରିବା ଗୃହୀତ ହେଲା । ଅଳକାଶ୍ରମ ଭାଙ୍ଗି ଯିବା ସତ୍ତ୍ୱେ ପଣ୍ଡିତ ପ୍ରାଣକୃଷ୍ଣ ପଡିହାରୀଙ୍କ ଉକ୍ତ ଆଶ୍ରମ ପ୍ରତି ଏକ ମୋହ ଥିଲା ଏବଂ ଆଶ୍ରମ ପରିଚାଳନା ମନୋବୃତ୍ତି ସନ୍ତୋଷଜନକ ନ ହେବାରୁ ସେ ବିଦାୟ ନେଲେ । ତା'ଛଡା ଗୋବିନ୍ଦ ବାବୁଙ୍କ ଅସୀମ ଉଦ୍ୟମ ପ୍ରତି ସେ ଈର୍ଷାନ୍ୱିତ ଥିଲେ । ଏଠାରୁ ବିଦାୟ ନେବା ପରେ ସେ ଗୋବିନ୍ଦ ବାବୁଙ୍କ ନାମରେ ବିଭିନ୍ନ କୁତ୍ସାରଟନା କଲେ । ଏସବୁ କଥା ଗୋପବଂଧୁ ଚୌଧୁରୀ ପତ୍ର ମାଧ୍ୟମରେ ଗୋବିନ୍ଦ ବାବୁଙ୍କୁ ଜଣାଇଲେ ଏହାର ସତ୍ୟତା ଜାଣିବା ପାଇଁ ।

୧୯୨୮ ମସିହାରେ ସେ କେତେ ଗୁଡିଏ ନୂଆ କାର୍ଯ୍ୟରେ ହାତ ଦେଲେ ଯଥା "ପଲ୍ଲି ସହଯୋଗ ବ୍ୟାଙ୍କ" "ଗୋପବଂଧୁ ଦାସ ଦାତବ୍ୟ ଚିକିତ୍ସାଳୟ" ଓ "ଶିକ୍ଷା ପାଇଁ ଗୋଟିଏ ପୁସ୍ତକାଳୟ" । ଆଶ୍ରମରେ ଏକ ହଷ୍ଟେଲ ଖୋଲିଲେ । ବିଭିନ୍ନ ଶାଖାର ପରିଚାଳନା ପାଇଁ ଅର୍ଥର ଆବଶ୍ୟକତା ପଡିଲା । ଆଶ୍ରମର ହିସାବକିତାବ ଠିକ୍ ରଖିବା ପାଇଁ କଟକ ଟ୍ରେଡିଂ କମ୍ପାନୀର ମାଲିକ ପଣ୍ଡିତ ଆକୁଳି ମିଶ୍ର ଆଶ୍ରମର ହିସାବ ରକ୍ଷକ ହେଲେ । ସେ କାହାର କର୍ମରେ ତ୍ରୁଟି ଦେଖିଲେ ସହ୍ୟ କରି ପାରନ୍ତି ନାହିଁ ।

## ଦଶପଲ୍ଲୀ ମେସ୍

୧୯୨୮ ମସିହାରେ ଭୟଙ୍କର ମେଲେରିଆରେ ପୀଡିତ ହୋଇ ୩ ମାସ କାଳ ଦଶପଲ୍ଲୀ ମେସ୍‌ରେ ରହିଲେ । ଏହି ମେସ୍‌ର ଉଦ୍ଦେଶ୍ୟ ହେଲା ପ୍ରତ୍ୟେକ ଦଶପଲ୍ଲୀରୁ ଆସି ଏଠାରେ ରହିବେ ଓ ପାଠ ପଢିବେ । ଏହି ମେସ୍‌ରେ ଦଶପଲ୍ଲୀର ରାଜନୀତି, ବାଣିଜ୍ୟ, ବ୍ୟବସାୟ, ଚିକିତ୍ସା କଥା ଆଲୋଚିତ ହୁଏ । ପଣ୍ଡିତ ଦୀନବଂଧୁ ପଣ୍ଡା ମେସ୍‌ର ସୁପରିଟେଣ୍ଡେଣ୍ଟ ଥିଲେ । ଶ୍ୟାମସୁନ୍ଦର ହୋତା ବୋଲି ଜଣେ ଛାତ୍ର ମେସ୍ ପରିଚାଳନା କରୁଥିଲେ । ସେ ପୀଡିତ ଥିବା ଅବସ୍ଥାରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ବୈଠକ କଟକରେ ବସିଲା । ସେ ନଯାଇ ପାରିଲେ ସୁଦ୍ଧା

ସବୁ ଜାଣୁଥିଲେ। ଓଡିଶା କର୍ମୀ ମାନଙ୍କ ମଧ୍ୟରେ ଏକତା ଓ ସହଯୋଗର ଅଭାବ ଥିଲା। ୧୯୨୮ ମସିହାରେ ଆଶ୍ରମ ରିପୋର୍ଟରେ ଆଶ୍ରମର ଲକ୍ଷ୍ୟ ଓ ଆଦର୍ଶ ବିଷୟ଼ ଉଲ୍ଲେଖ କରାଗଲା।

ବେଲଗାଁଓ ପରେ କଲିକତା କଂଗ୍ରେସ ଅଧିବେଶନରେ ନେହୁର କମିଟି ସିଦ୍ଧାନ୍ତ କଂଗ୍ରେସ ଗ୍ରହଣ କରି ନେଇଥିଲା। ଯଥା ପୂର୍ଣ୍ଣ ସ୍ୱାଧୀନତା ବଦଳରେ ସ୍ୱାୟତ୍ତଶାସନ। ଏହି କମିଟିର ଅଧ୍ୟକ୍ଷ ଥିଲେ ମୋତିଲାଲ ନେହେରୁ। ଏହି ରିପୋର୍ଟରେ ମଧ୍ୟ ଉଲ୍ଲେଖ ଥିଲା ଯଦି ନିର୍ଦ୍ଦିଷ୍ଟ ସମୟ଼ ୧୯୨୯ ଡିସେମ୍ବର ୩୧ ତାରିଖ ସୁଦ୍ଧା ଏହି ଔପନିବେଶିକ ସ୍ୱାୟତ୍ତଶାସନ ଅଧିକାର ନମିଳେ ତାହା ହେଲେ ପୂର୍ଣ୍ଣ ସ୍ୱାଧିନତା ଦାବୀ କରିବ କଂଗ୍ରେସ। ତେଣୁ ଏକ ସଂଘର୍ଷ ଓ ମୁକବିଲାର ପରିସ୍ଥିତି ଉପୁଜିଲା।

୧୯୨୯ ମସିହା ସୁଦ୍ଧା ଚମ୍ପାପୁର ଆଶ୍ରମ କାର୍ଯ୍ୟ ସାରିବା ପାଇଁ ଲକ୍ଷ୍ୟ ରଖିଲେ। କର୍ମରେ ଅବହେଳା ଦେଖିଲେ ଗୋବିନ୍ଦ ବାବୁ ରାଗି ଯାଆନ୍ତି ଓ ଏହାକୁ ଅନ୍ୟମାନେ ଭୁଲନ୍ତି ନାହିଁ ବରଂ ପ୍ରତିଶୋଧର ସୁଯୋଗ ଖୋଜୁଥାନ୍ତି। ରାଜନୀତିରେ ସରଳତାର ସ୍ଥାନ ନାହିଁ ଓ କାହାକୁ ସହଜରେ ବିଶ୍ୱାସ କରିବା ଉଚିତ ନୁହେଁ ବୋଲି ଅନୁଭବ କଲେ।

୧୯୨୯ ମସିହାରେ ଆଶ୍ରମର କୋଠାଘର କାମ ସରିଲା। ଆଶ୍ରମର କାର୍ଯ୍ୟ, ଆଦର୍ଶ ଓ ଲକ୍ଷ୍ୟ ସମ୍ବନ୍ଧରେ ବଂଧୁ ମାନଙ୍କୁ ଜଣାଇ ଦେବାକୁ ସେ ଉଚିତ ମନେ କଲେ। ଏହାର ଉଦ୍ଦେଶ୍ୟ ହେଉଛି ଦେଶପ୍ରେମ ଜାଗରଣ କରିବା, ଖଦଡ କାର୍ଯ୍ୟ ପ୍ରସାର, ରୋଗୀସେବା ଇତ୍ୟାଦି।

ଏହି ସମୟ଼ରେ ଜବାହରଲାଲ୍ ନେହୁରୁଙ୍କ ସଭାପତିତ୍ୱରେ ଲାହୋର ଠାରେ କଂଗ୍ରେସ ଅଧିବେଶନ ବସିଲା। ଏହି ଅଧିବେଶନରେ ପୂର୍ଣ୍ଣ ସ୍ୱାଧିନତା କଂଗ୍ରେସର ଲକ୍ଷ୍ୟ ହେଲା। କଂଗ୍ରେସୀମାନଙ୍କୁ କାଉନସିଲ୍, ମ୍ୟୁନିସ୍‌ପାଲଟି ଓ ଜିଲ୍ଲାବୋର୍ଡ ତ୍ୟାଗ କରି ଆସିବା ପାଇଁ ଆହ୍ୱାନ ଦିଆଗଲା। ଜାନୁୟାରୀ ୨୬ ତାରିଖକୁ ଦେଶର ପୂର୍ଣ୍ଣ ସ୍ୱାଧୀନତା ଦିବସ ରୂପେ ପାଳନ କରିବାକୁ ଶପଥ ପାଠ କରାଗଲା ୧୯୩୦ରେ। ସାବରମତୀ ଆଶ୍ରମରେ କଂଗ୍ରେସ କମିଟି ଏହି ସଂଗ୍ରାମ ପରିଚାଳନା ପାଇଁ ମହାତ୍ମା ଗାନ୍ଧୀଙ୍କୁ ପୂର୍ଣ୍ଣ କ୍ଷମତା ଦେଲେ। ମହାତ୍ମା ଗାନ୍ଧି ଲବଣ ସତ୍ୟାଗ୍ରହ କରିବେ ବୋଲି ବଡଲାଟ ଇରଉଇନ୍‌ଙ୍କୁ ଚରମ ପତ୍ର ଦେଲେ। ପ୍ରତ୍ୟେକ ପ୍ରଦେଶ ସ୍ୱାଧୀନତା ପାଇଁ ପ୍ରସ୍ତୁତ ହୋଇଗଲେ।

ଓଡିଶାରେ ବାଲେଶ୍ୱର ଠାରେ କଂଗ୍ରେସ କମିଟିର ବୈଠକ ବସି ସ୍ଥିର କଲେ ଲବଣ ସତ୍ୟାଗ୍ରହରେ ଯୋଗ ଦେବେ ବୋଲି । ସମୟ ସମୟରେ ଗୋବିନ୍ଦ ବାବୁ ଆଶ୍ରମ କଥା ଭାବୁଥାନ୍ତି ଜଣେ ଉପଯୁକ୍ତ ବ୍ୟକ୍ତି ହାତରେ ଆଶ୍ରମ ଦାୟିତ୍ୱ ଦେଇ ସତ୍ୟାଗ୍ରହରେ ଯୋଗ୍ଯ ଦେବେ ।

୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ସାବରମତୀ ଆଶ୍ରମରୁ ଗୁଜରାଟ ଉପକୂଳର ଦାଣ୍ଡିନାମକ ସ୍ଥାନକୁ ଲୁଣ ମାରିବା ପାଇଁ ଯାତ୍ରା କଲେ ମହାତ୍ମା ଗାନ୍ଧି କେତେକ କଂଗ୍ରେସ କର୍ମୀଙ୍କୁ ନେଇ। ୧୯୨୦ରେ ନାଗପୁର କଂଗ୍ରେସ ଅଧିବେଶନରେ ସ୍ୱରାଜ୍ୟ ପାଇବା ପାଇଁ ମହାତ୍ମା ଗାନ୍ଧି ଅସହଯୋଗ ଆନ୍ଦୋଳନ କରିଥିଲେ । ଭାଷା ସୂତ୍ରରେ ପ୍ରଦେଶ ଗଠନ ପ୍ରସ୍ତାବ ମଧ୍ୟ ଏହି ଅଧିବେଶନରେ ଗୃହୀତ ହୋଇଥିଲା । ଅସହଯୋଗ ଆନ୍ଦୋଳନକୁ ମୁକ୍ତି ସଂଗ୍ରାମ ନୁହେଁ ବରଂ ଏହା ସାଧନା ଓ ସଂଗଠନ ବୋଲି ମହାତ୍ମା ଗାନ୍ଧି ବାଖ୍ୟା କରିଥିଲେ। ୧୯୨୦ରେ ପୁରୀ ଦୁର୍ଭିକ୍ଷ ସମୟରେ ଗୋବିନ୍ଦ ବାବୁ ଏହି ବାର୍ତ୍ତା ପ୍ରଚାର କରିଥିଲେ। ୧୯୨୧ରେ ଗୋପବଂଧୁ ଦାସ ଏହି ବାର୍ତ୍ତାର ମୁଖ୍ୟ ବାର୍ତ୍ତାବହ ହେଲେ । ଅହିଂସା ହେଉଛି ଅସହଯୋଗ ଆନ୍ଦୋଳନର ମୂଳମନ୍ତ୍ର। ଅସହଯୋଗ ଅର୍ଥ ହେଉଛି ଆଇନ ଅମାନ୍ୟ କରିବା, ଖଜଣା ଟିକସ ବନ୍ଦ କରିବା ଇତ୍ୟାଦି । ଏହି ଆନ୍ଦୋଳନ କରିବା ପୂର୍ବରୁ ମହାତ୍ମା ଗାନ୍ଧି ବର୍ଦ୍ଦୋଳି ତାଲୁକକୁ ସଂଗଠିତ କଲେ। ଏହି ସମୟରେ ଚୌରିଚୋରାଠାରେ ହିଂସାତ୍ମକ କାଣ୍ଡ ଘଟିଲା । ତେଣୁ ମହାତ୍ମା ଗାନ୍ଧି ଏହି ଆନ୍ଦୋଳନକୁ ବନ୍ଦ କରି ଦେଲେ ଓ ଗ୍ରାମ ସଂଗଠନ ଉପରେ ଜୋର ଦେଲେ । ଓଡିଶାରେ ଗ୍ରାମ ସଂଗଠନର ବିକାଶ ହୋଇନଥିଲା କାରଣ ଓଡିଶା ବୋଲି ଗୋଟିଏ ପ୍ରଦେଶ ସୃଷ୍ଟି ହୋଇନଥିଲା ।

ଓଡିଆମାନେ ସଂଗଠିତ ନଥିଲେ। କଂଗ୍ରେସର ସଭ୍ୟ ହେବାକୁ ଲୋକ ମିଳିଲେନି। ଯେଉଁମାନେ ହେଲେ ଚାନ୍ଦା ଦେଲେନି କି ବୈଠକରେ ଯୋଗ ଦେଲେନି। ତେଣୁ ୧୯୩୦ରେ ଜାନୁୟାରୀ ୨୬ରେ ସ୍ୱାଧିନତା ଦିବସ ପାଳିତ ହୋଇ ପାରିଲାନି। ଓଡିଶାରେ ଲବଣ ସତ୍ୟାଗ୍ରହ କରିବାକୁ ବାବୁ ହରେକୃଷ୍ଣ ମହତାବ ଦୃଢ ସଂକଳ୍ପ କରିଥିଲେ। ଲବଣ ସତ୍ୟାଗ୍ରହ ପାଇଁ ବାଲେଶ୍ୱରଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଏକ ସ୍ୱତନ୍ତ୍ର ବୈଠକ ବସିଲା । କେତେକ କର୍ମୀ ଗ୍ରାମ ସଂଗଠନରେ ନିଯୁକ୍ତ ହେବାକୁ ମତ ପ୍ରକାଶ କରିଥିଲେ।

୧୯୨୦ରେ ଶ୍ରୀ ଗୋପବଂଧୁ ଚୌଧୁରୀ ଡେପୁଟି ଚାକିରୀ ଛାଡି କଂଗ୍ରେସରେ

ଯୋଗ ଦେଇଥିଲେ ଏବଂ ପରିବାରର ସମସ୍ତଙ୍କୁ ଦେଶସେବା କାର୍ଯ୍ୟରେ ନିୟୋଜିତ କରିଥିଲେ। ଗ୍ରାମ ସଂଗଠନ ବିଷୟରେ କର୍ମୀମାନେ ଗୋବିନ୍ଦ ବାବୁଙ୍କ ଠାରୁ ଶୁଣିବାକୁ ଚାହିଁଥିଲେ। ଗୋବିନ୍ଦ ବାବୁ ଗ୍ରାମ ସଂଗଠନ ପରିବର୍ତ୍ତେ ଲବଣ ସତ୍ୟାଗ୍ରହ କରିବା ସପକ୍ଷରେ ମତ ଦେଇଥିଲେ। ଏହାକୁ ପ୍ରାଣକୃଷ୍ଣ ପଡିହାରୀ ଦୃଢ ସମର୍ଥନ କରିଥିଲେ।

ବାଲେଶ୍ୱରର ଇଞ୍ଚୁଡିଠାରେ ଲବଣ ସତ୍ୟାଗ୍ରହ କରିବାକୁ ଜଣେ କଂଗ୍ରେସ କର୍ମୀ ସୁରେନ୍ଦ୍ର ଦାସ ଭଲ ସଂଗଠନ କରିଥିଲେ। ଏହି ସତ୍ୟାଗ୍ରହରେ ଶ୍ରୀ ଗୋପବଂଧୁ ଚୌଧୁରୀ ନେତୃତ୍ୱ ଦେଇଥିଲେ। କଟକରୁ ଇଞ୍ଚୁଡି ଅଭିମୁଖେ ଯାତ୍ରା ଆରମ୍ଭ ହେଲା ଅପ୍ରିଲ ୬ ତାରିଖ ଦିନ।

## ରେଙ୍ଗୁନ ଯାତ୍ରା

ଏହି ସତ୍ୟାଗ୍ରହ ଓଡିଶାରେ ଯୁବଶକ୍ତି ମଧ୍ୟରେ ବିଦ୍ୟୁତ ଶକ୍ତି ସଂଚାର କଲା। ନୂତନ ଉନ୍ମାଦନା ଓ ଉନ୍ମେଷ ଖେଳିଗଲା। ବାଲେଶ୍ୱର ବୈଠକରୁ ଆସି ଗୋବିନ୍ଦ ବାବୁ ଚମ୍ପାପୁର ଆଶ୍ରମ ପାଇଁ ଚାନ୍ଦା ସଂଗ୍ରହ କରିବାକୁ ରେଙ୍ଗୁନ ଯାତ୍ରା କଲେ। ରେଙ୍ଗୁନରୁ ୨ ହଜାର ଟଙ୍କା ସଂଗ୍ରହ କରି ଚମ୍ପାପୁର ଫେରିଲେ।

୧୯୧୯ରେ ମହାତ୍ମା ଗାନ୍ଧି ରାଓଲାଟ ଆଇନ ବିରୁଦ୍ଧରେ ସତ୍ୟାଗ୍ରହ କରିବାକୁ ଆହ୍ୱାନ ଦେଇ ଥିଲେ ଅପ୍ରେଲ ୬ରେ। ସେଥିପାଇଁ ଅପ୍ରେଲ ୧୩ ତାରିଖରେ ଜାଲିଆନାୱାଲାବାଗଠାରେ ନରସଂହାର ହେଲା। ତେଣୁ ଅପ୍ରେଲ ୬ରୁ ୧୩ ପର୍ଯ୍ୟନ୍ତ ସପ୍ତାହକୁ ୧୯୨୦ରୁ କଂଗ୍ରେସ ଜାତୀୟ ସପ୍ତାହ ରୂପେ ପାଳନ କରେ।

ଗୋବିନ୍ଦ ବାବୁ ମାତ୍ର ୮ ହଜାର ଟଙ୍କାରେ ଗାନ୍ଧି ସେବାଶ୍ରମ ଗଢି ଥିଲେ। ପଲ୍ଲି ଅଞ୍ଚଳରେ ସୂତାକଟା, ଖଦଡ ବୁଣା, ବିକ୍ରି, ପାଠାଗାର ସ୍ଥାପନ, ଦାତବ୍ୟ ଚିକିତ୍ସା କେନ୍ଦ୍ର ଓ ପଲ୍ଲିବ୍ୟାଙ୍କ ସ୍ଥାପନ ଇତ୍ୟାଦି ଲୋକ କଲ୍ୟାଣ କାର୍ଯ୍ୟ ସୃଷ୍ଟି କରିଥିଲେ।

ସତ୍ୟାଗ୍ରହ କାର୍ଯ୍ୟ ଦେବା ସ୍ୱାଧୀନ ପାଇଁ ଉଦିଷ୍ଟ ଥିବାରୁ ସେ ଆଶ୍ରମ ଛାଡି ଲବଣ ସତ୍ୟାଗ୍ରହ ଯୋଗ ଦେବେ କି ଆଶ୍ରମରେ ରହି ଆଶ୍ରମ କାର୍ଯ୍ୟ କରିବେ କିଛି ସ୍ଥିର କରିପାରୁ ନଥାନ୍ତି। ଶ୍ରୀ ଗୋପବଂଧୁ ଚୌଧୁରୀ ଗିରଫ ହୋଇ ଯିବାପରେ ଆଚାର୍ଯ୍ୟ ହରିହର ଏବଂ ତାଙ୍କ ପଛକୁ ମଦନ ମୋହନ ପଟ୍ଟନାୟକ ସେନାପତି

ହେବାର ସ୍ଥିର ହଇଥିଲା । ଏମାନେ ଆସି ଗାନ୍ଧି ସେବାଶ୍ରମରେ ରାତ୍ରିଯାପନ କଲେ ଏବଂ ସେମାନଙ୍କୁ ବିଦାୟ ଦେଇ ଗୋବିନ୍ଦ ବାବୁ କଟକ ଗଲେ । ଅପ୍ରେଲ ୧୩ରେ କାଠାଯୋଡି ନଦୀ ବାଲିରେ ବସୁଥିବା ସଭାରେ ସଭାପତି ହେଲେ ।

## ସତ୍ୟାଗ୍ରହ ସଂଗ୍ରାମ

ଇଞ୍ଚୁଡି ଠାରେ ଅପ୍ରିଲ ୧୩ ତାରିଖରେ ଲବଣ ସତ୍ୟାଗ୍ରହ ପାଇଁ ସ୍ଥିର ହେଲା । ଜାଲିଆନାୱାଲାବାଗର ଗଣହତ୍ୟାର ପ୍ରତ୍ୟକ୍ଷ ଅନୁଭୂତି ଗୋବିନ୍ଦ ବାବୁଙ୍କର ଥିଲା । ପୁରୀରେ ସତ୍ୟାଗ୍ରହ କରିବାପାଇଁ ଶ୍ରୀ ଅନନ୍ତ ପଟ୍ଟନାୟକ ଆସି ଗୋବିନ୍ଦ ବାବୁଙ୍କୁ ଡାକି ନେଇ ଗଲେ । ସଭା ନ କରିବାକୁ ପରୱାନା ଜାରି ହୋଇଥିବାରୁ ତାକୁ ବେଖାତିରି କରି ସଭା କରିବାରୁ ଗିରଫ ପରୱାନା ବାହାରିଲା ଗୋବିନ୍ଦ ବାବୁଙ୍କ ନାମରେ । ତେଣୁ ସେ ପୁରୀ ଛାଡି କଟକ ଚାଲିଆସିଲେ । ମାହାଙ୍ଗା, ସାଲେପୁର ଓ ବଡଚଣାରେ ସଭା କରି ରାତିରେ ସତ୍ୟାଗ୍ରହ ବିଷୟରେ ଲୋକମାନଙ୍କୁ ବୁଝାନ୍ତି ଓ ଦିନରେ ଲୁଚି ରହନ୍ତି । ଏକଦା କାଠଯୋଡି ବାଲିରେ ସଭା କରୁଥିବା ସମୟରେ ପୋଲିସ୍ ଗିରଫ କରିବାକୁ ଆସିବାରୁ ସେ ନାଟକୀୟ ଢଙ୍ଗରେ ପୋଲିସ ବେକରେ ଫୁଲ ହାର ପକାଇ ଦେଇ ଗିରଫ ହେଲେ ।

## ଜେଲରେ ସ୍ୱରାଜ୍ୟ କଏଦୀ

ବିହାର ଓଡିଶା ଗୋଟିଏ ପ୍ରଦେଶ ହୋଇଥିବାରୁ ରାଜନୈତିକ ବନ୍ଦୀମାନେ 'କ' ଶ୍ରେଣୀର ହଜାରୀ ବାଗ ଜେଲରେ, 'ଗ' ଶ୍ରେଣୀର ପାଟଣା କ୍ୟାମ୍ପ ଜେଲରେ । ବନ୍ଦୀମାନଙ୍କୁ 'କ', 'ଖ', 'ଗ' ୩ ଶ୍ରେଣୀରେ ବିଭକ୍ତ କରାଯାଇଥାଏ । ଓଡିଶାର ୨୪ ଜଣ ରାଜନୈତିକ ବନ୍ଦୀମାନଙ୍କ ମଧ୍ୟରେ ହେଲେ ଡକ୍ଟର ହରେକୃଷ୍ଣ ମହତାବ, ପଣ୍ଡିତ ନୀଳକଣ୍ଠ ଦାସ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ, ନନ୍ଦ କିଶୋର ଦାସ, କୃପାସିନ୍ଧୁ ହୋତା, ଗୋପବଂଧୁ ଚୌଧୁରୀ ଆଦି । ବିହାରର ରାଜନୈତିକ ବନ୍ଦୀମାନଙ୍କ ମଧ୍ୟରେହେଲେ ବାବୁ ରାଜେନ୍ଦ୍ର ପ୍ରସାଦ ଓ ସୀମାନ୍ତ ଗାନ୍ଧି । ତା'ଛଡା ବିହାରର ଓକିଲ, ଧନୀ, ବ୍ୟବସାୟୀ, ଉଚ୍ଚ ଶିକ୍ଷିତ ଓ ଜମିଦାର ପ୍ରଭୃତି ଥିଲେ ।

## ସରକାରଙ୍କ ଦମନଲୀଳା

ଇଂରେଜ ସରକାର ପ୍ରଥମେ ଲବଣ ସତ୍ୟାଗ୍ରହକୁ ହାଲୁକା ଭାବେ ଗ୍ରହଣ କରିଥିଲେ । ତେଣୁ ସତ୍ୟାଗ୍ରହୀମାନେ ମନଇଚ୍ଛା ଲୁଣମାରି, ହାଟ ବଜାରରେ ବିକ୍ରୀ କଲେ । ଏଥିରେ ସରକାରଙ୍କ ଧୈର୍ଯ୍ୟଚ୍ୟୁତି ହେବାରୁ ସତ୍ୟାଗ୍ରହକୁ ଦମନ କରିବା ପାଇଁ ଲାଠି, ଗୁଳି ଚାଲିଲା । ଗୁଜରାଟର ଧର୍ଷଣାଠାରେ ଗୋଟିଏ ସରକାରୀ ଲୁଣ ଗୋଲାଥିଲା । ମହାତ୍ମା ଗାନ୍ଧି ସତ୍ୟାଗ୍ରହୀ ମାନଙ୍କୁ ଏହାକୁ ଆକ୍ରମଣ କରି ଲୁଟ କରିବାକୁ ଆଦେଶ ଦେଲେ । ତା'ଛଡା ଦେଶର ଆଉ ଯେଉଁ ସ୍ଥାନ ମାନଙ୍କରେ ଲୁଣ ଖୋଲା ଥିଲା ସବୁ ଆକ୍ରମଣ କରିବାକୁ ମହାତ୍ମାଜୀ ଆଦେଶ ଦେଲେ । ଏହା ଏକ ଲୋମହର୍ଷଣକାରୀ ଦମନଲୀଳା ଥିଲା ସରକାରଙ୍କର । ଦମନ ସତ୍ତ୍ୱେ ପୋଲିସର ସତ୍ୟାଗ୍ରହୀ ହାତ ମୁଠାରୁ ଲୁଣ ନ ଖସାଇବାକୁ ଆଦେଶ ଥିଲା ଗାନ୍ଧିଙ୍କର । ଏ ବିଷୟରେ ଆଗରୁ ମହାତ୍ମା ଗାନ୍ଧି ବଡଲାଟ ଇରଉଇନ୍‌ଙ୍କୁ ଜଣାଇ ଦେଇଥିଲେ । କାରଣ କୌଣସି କଥା ନ ଜଣାଇ ସତ୍ୟାଗ୍ରହ କରିବା ଗାନ୍ଧିଜୀଙ୍କର ନୀତି ବିରୁଦ୍ଧ ଥିଲା । କିନ୍ତୁ ଅନେକ ଗାନ୍ଧିଜୀଙ୍କର ଏ ନୀତିକୁ ଗ୍ରହଣ କରି ପାରି ନାହାନ୍ତି ।

ଧର୍ଷଣାଗୋଲା ଆକ୍ରମଣ ପରେ ଦେଶବାସୀ ଶ୍ରଦ୍ଧାରେ ଗାନ୍ଧିଜୀଙ୍କୁ ନମକ ଚୋର ବୋଲି କହିଲେ । ଏଥିରେ ଗାନ୍ଧିଜୀ କ୍ଷୁବ୍ଧ ହୋଇ ନଥିଲେ । ଦିନେ ଗାନ୍ଧିଜୀ ଏକାକୀ ଗଛତଳେ ଏକ ଖଟିଆ ପକାଇ ଶୋଇଥିବା ବେଳେ ବିଟ୍ରିଶ ମାଜିଷ୍ଟ୍ରେଟ୍ ଅଧରାତିରେ ଆସି ଗାନ୍ଧିଜୀଙ୍କୁ ଗିରଫ କଲେ ଓ ସେ ଅଟକ ବନ୍ଦୀ ହୋଇ ରହିଲେ । ବମ୍ବେ ନିକଟରେ ଓ୍ୱାଦଲା ଲୁଣ ଗୋଲା ମଧ୍ୟ ଆକ୍ରମଣ ହେଲା ।

## ଜେଲ ଜୀବନ

ହଜାରୀବାଗ ଜେଲରେ ଗୋବିନ୍ଦଜୀ ଥିଲେ । ସେଠାରେ ବନ୍ଦୀମାନେ ପ୍ରାୟ ସମସ୍ତେ ଶିକ୍ଷିତ ଶ୍ରେଣୀର ରାଜନୈତିକ ବନ୍ଦୀ ଥିଲେ । ସେମାନଙ୍କୁ ଅଲଗା ଅଲଗା ଘର ଖଟ, ମଶାରୀ ସରକାରୀ ଯୋଗାଇ ଥାଆନ୍ତି । ରାତିରେ ଲଣ୍ଠନ ବ୍ୟବହାର କରିବା, ବାହାରୁ ଖାଦ୍ୟ ମଗାଇ ଖାଇବା ଇତ୍ୟାଦି ସୁବିଧା ଦିଆଯାଇଥାଏ । ଧର୍ମ, ରାଜନୀତି, ଅର୍ଥଶାସ୍ତ୍ର ଓ ସମାଜବାଦ ବିଷୟରେ ବହି ପଢିବାକୁ ମିଳେ ।ଥଟ୍ଟା, ତାମସା, ହସ ଖେଳରେ ସମୟ କଟେ । ବକ୍ତୃତା, ପାଲା, ବାହୁନିବା ଇତ୍ୟାଦି ଅଭିନୟ ଚାଲେ । ୧୨ଟା ସୁଦ୍ଧା ଭୋଜନ ଶେଷ ପରେ ପଶା ଖେଳ ହୁଏ । ପ୍ରତି ୧୫ ଦନରେ ଭୋଜି ହୁଏ । ଭାଗଲପୁର ଜେଲରେ ଥିବା ବେଳେ ଚେସ୍ ଖେଳ

ଶିଖିଥିଲେ। ସଂଧ୍ୟା ୫ଟାରେ ରାତି ଭୋଜନ ପରେ ସାଡେ ୬ଟାରେ ଜେଲ ସିପାହୀ ତାଲା ପକାଇ ଦିଏ। ଜେଲରେ ଥାଇ ଗୋବିନ୍ଦଜୀ ଆଶ୍ରମ ପରିଚାଳନା ସଂପର୍କରେ ଚିଠି ପାଆନ୍ତି।

ବାଲେଶ୍ୱର୍ ବ୍ୟତୀତ କଟକ, ପୁରୀ ଜିଲ୍ଲାରେ ମଧ୍ୟ ଲୁଣ ମରା ଆରମ୍ଭ ହୋଇଯାଏ ଥିଲା। ପଣ୍ଡିତ ନୀଳକଣ୍ଠ ଦାସ କାକଟପୁରରେ ଲୁଣ ମାରିବା ଯୋଗୁଁ ଗିରଫ ହୋଇ ହଜାରୀ ବାଗ ଜେଲରେ ଥିଲେ। ସ୍କୁଲ୍, କଲେଜ ଛାତ୍ର, ନିରୀହ ଗ୍ରାମବାସୀ ଓ ଯୁବକ ଲୁଣମାରୀ ଧରା ହୋଇ 'ଗ' ଶ୍ରେଣୀର୍ ବନ୍ଦୀ ହିସାବରେ ପାଟଣା କାମ୍ପ ଜେଲକୁ ଆସୁଥିଲେ। 'କ', 'ଖ' ଶ୍ରେଣୀର ବନ୍ଦୀମାନେ ହଜାରୀ ବାଗ ଜେଲକୁ ଆସୁଥିଲେ।

ଏହି ଲବଣ ସତ୍ୟାଗ୍ରହ ଦେଶରେ ଦାବାନଳ ବେଗରେ ଗତି କରୁଥିବା ସମୟରେ ଗୋବିନ୍ଦ ବାବୁ ଆଶ୍ରମ ବିଷୟରେ ଚିନ୍ତିତ ଥିଲେ। ଏହି ସମୟରେ ସେ ଖବର ପାଇଲେ ଯେ କେନ୍ଦୁପାଟଣା ଆଶ୍ରମ ବନ୍ଦ ହୋଇଛି ହିସାବ ପତ୍ର ଗୋଳମାଳ ଯୋଗୁଁ। ସମୟ ସମୟରେ ଆଶ୍ରମକୁ ବିକି ସତ୍ୟାଗ୍ରହ ପାଣ୍ଠିକୁ ଦେଇ ଦେବାକୁ ଇଚ୍ଛା ହେଉଥାଏ।

## ଗୋଲ ଟେବୁଲ ବୈଠକ

ଶାନ୍ତିସ୍ଥାପନ ପାଇଁ ସରକାର ବଡଲାଟ୍ ଉଭୟ ସଭାର ସଭ୍ୟମାନଙ୍କୁ ଡକାଇ ନିଷ୍ପତ୍ତି ଶୁଣାଇ ଦେଲେ ଯେ ବିଲାତରେ ଗୋଲ ଟେବୁଲ ବୈଠକ ବସିବ। ଏହା ୧୯୩୦ ଜୁଲାଇ ୯ ତାରିଖର ଘଟଣା। ପ୍ରତିନିଧି ସ୍ୱରୂପ ଶ୍ରୀ ସାପ୍ରୁ ଓ ଶ୍ରୀ ଜୟକାର ଯାରବାଡା ଜେଲରେ ମହାତ୍ମା ଗାନ୍ଧିଙ୍କୁ ଭେଟିଲେ। ମହାତ୍ମାଙ୍କ ଠାରୁ ବାର୍ତ୍ତା ଧରି ନୈନି ଜେଲରେ ମୋତିଲାଲ୍ ଓ ଜବାହରଙ୍କ ସହିତ କଥାବାର୍ତ୍ତା କଲେ। ମୋତିଲାଲ୍ ଓ ଜବାହରଙ୍କୁ ଆଣି ଯାରବାଡାରେ ମହାତ୍ମାଙ୍କ ସହିତ କଥାବାର୍ତ୍ତା କଲେ। ତିନି ଦିନ ଆଲୋଚନା ପରେ ମହାତ୍ମାଜୀଙ୍କ ପତ୍ର ଧରି ବଡଲାଟଙ୍କୁ ଦିଲ୍ଲୀରେ ଦେଲେ। ଏଥିରେ ରାଜନୈତିକ ବନ୍ଦୀମାନଙ୍କ ମଧ୍ୟରେ ଚହଳ ସୃଷ୍ଟି କଲା। ଶୀଘ୍ର ଜେଲରୁ ଖଲାସ ହେବା ମନ ନେଇ। ତା'ଛଡା ଗୋବିନ୍ଦଜୀଙ୍କ ମନ ଆଶ୍ରମ ବିଷୟରେ ଥାଏ ଯେହେତୁ ସେଠାରେ ଆଶ୍ରମରେ ତ୍ରୁଟି ବିଚ୍ୟୁତି ସଂବାଦ ସେ ପାଇଥାନ୍ତି।

ବଡ ଇରଉଇନ ମହାତ୍ମାଜୀଙ୍କ ପ୍ରସ୍ତାବ ଗ୍ରହଣ କଲେ ନାହିଁ। ଫଳରେ ସାପ୍ରୁ ଓ ଜୟକରଙ୍କ ଉଦ୍ୟମ ଫଳବତୀ ହେଲା ନାହିଁ। ଆଲ୍ଲାହାବାଦ ଠାରେ କଂଗ୍ରେସ

କାର୍ଯ୍ୟକାରୀ ସମିତିର ବୈଠକ ବସିଲା । ମାନ୍ଦାଦଳଙ୍କ ପ୍ରସ୍ତାବ ଗୋଲ ଟେବୁଲ ବୈଠକରେ ଯୋଗ ଦେବାକୁ ପ୍ରତ୍ୟାଖ୍ୟାନ କରି କଂଗ୍ରେସ ସତ୍ୟାଗ୍ରହ ଆନ୍ଦୋଳନକୁ ଜୋରଦାର କଲା ଯଥା ବିଦେଶୀ ବସ୍ତ୍ର ବର୍ଜନ, ବିଦେଶୀ ଲୁଗା ଦୋକାନ, ମଦ ଓ ଅଫିମ ଦୋକାନ ଆଗରେ ପିକେଟିଂ କରିବା । ଖଜଣା ବନ୍ଦ, ବିଦେଶୀ ବ୍ୟାଙ୍କ, ଜାହାଜ, ବୀମା କମ୍ପାନୀ, ବିଦେଶୀ କଳ କାରଖାନା ବର୍ଜନ କରିବା । ସତ୍ୟାଗ୍ରହ ସଂଗ୍ରାମ ଭୀଷଣ ଆକାର ଧାରଣ କଲା । ସରକାରଙ୍କ କଠୋର ଦମନ ଲୀଳା ଆରମ୍ଭ ହୋଇଗଲା । ଏସବୁ ଦେଖି ରାଜନୈତିକ ବନ୍ଦୀମାନଙ୍କର ଖଲାସ ହେବାର ଆଶା ମଉଳି ଗଲା ।

ସରକାର ଆନ୍ଦୋଳନକୁ ଦମନ କରିବାକୁ ଯାଇ ମାତ୍ରାଧିକ୍ୟ କାର୍ଯ୍ୟାନୁଷ୍ଠାନ କଲେ । ବଡଲାଟ ଅର୍ଡିନାନ୍ସ ଉପରେ ଅର୍ଡିନାନ୍ସ ଜାରି କଲେ । ଦେଶରେ ଆଇନ କାନୁନ ବିପର୍ଯ୍ୟସ୍ତ ହୋଇ ପଡିଲା । କଂଗ୍ରେସ ଅନୁଷ୍ଠାନକୁ ବେଆଇନ ଘୋଷଣା କରାଗଲା ଓ କଂଗ୍ରେସ ପାଣ୍ଠି ବାଜ୍ୟାପ୍ତି କରାଗଲା । କଂଗ୍ରେସ ବାଲାଙ୍କ ସହିତ ସଂପର୍କ ରଖିବା, ସେମାନଙ୍କୁ ଆଶ୍ରୟ ଦେବା ଓ ଖାଇବା ପିଇବାକୁ ଦେବା ଦେଶ ଦ୍ରୋହ ବୋଲି ଧରାଗଲା । ଲୁଣ ମରା କେନ୍ଦ୍ର ଗୁଡିକ ଭାଙ୍ଗି ଧୂଳିସାତ୍ କରାଗଲା, ଏବଂ କଂଗ୍ରେସ ଗୃହ ଗୁଡିକ ସରକାରୀ ଲୋକେ ଦଖଲ କରିନେଲେ ।

ବଡଲାଟ ଲର୍ଡ ମିଣ୍ଟୋଙ୍କ ସମୟରୁ ସରକାର ଦେଶରେ ଲୋକଙ୍କୁ ପ୍ରଲୋଭନ ଦେଖାଇବା ଓ ଆନ୍ଦୋଳନକୁ କଠୋର ହସ୍ତରେ ଦମନ କରିବା ନୀତି ଅବଲମ୍ବନ କଲେ । ଯେଉଁମାନଙ୍କୁ ସରକାର ଗୋଲ ଟେବୁଲ ବେଠକକୁ ବାଛିଲେ ସେମାନେ ଲୋକଙ୍କ ପ୍ରତିନିଧି ନ ଥିଲେ କେବଳ ବ୍ୟକ୍ତିଗତ ପ୍ରତିଷ୍ଠା ଥିବା ଲୋକମାନେ ଥିଲେ ।

ଏକ ବର୍ଷ ପୂର୍ବରୁ, ନେହେରୁ ରିପୋର୍ଟରେ ଉଲ୍ଲେଖ ଥିଲା, ଔପନିବେଶିକ ସ୍ୱାଧୀନତାଦେଇ ଗୋଲ ଟେବୁଲ ଡକାଇବା । ନରମପନ୍ଥୀଙ୍କ ଉଦ୍ୟମ ସରକାର ଓ କଂଗ୍ରେସ ମଧ୍ୟରେ ମିଳାମିଶା କରିବା ବିଫଳ ହୋଇଥିଲା । ସରକାର ନେହେରୁ ରିପୋର୍ଟ ଗ୍ରହଣ କରି ନଥିଲେ ।

## ସଂଗ୍ରାମର ବ୍ୟାପକତା

ସଂଗ୍ରାମ ପାଇଁ ସ୍କୁଲ, କଲେଜ ଛାତ୍ର ଛାତ୍ରୀ, ନବ ବଧୂମାନେ ରାଜରାସ୍ତାକୁ ଓହ୍ଲାଇ ଆସିଲେ । ଦଳେ ଖୋସାମତିଆ ଲୋକ ସଭାସମିତି କରି ଶାନ୍ତି ପାଇଁ ପ୍ରଚାର କଲେ ଯେ ଧନ, ବିପନ୍ନ କରି ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରିବା

ବୃଥା । ସରକାରଙ୍କ ଦମନ ଯେତେ କଠୋର ହେଲା ସଂଗ୍ରାମ ସେତେ ଜୋରଦାର ହେଲା ।

## ବାନର ସେନା

ଛୋଟ ଛୋଟ ,ପିଲାମାନେ ମଧ୍ୟ ସଂଗଠନ କରି ଏହି ସଂଗ୍ରାମରେ ଝାସ ଦେଲେ । ଏହି ସଂଗଠନକୁ ବାନର ସେନା କୁହାଯାଉଥିଲା । କୋର୍ଟ କଚେରୀ ଅଚଳ କରିବା, ମଦ ଦୋକାନ ଓ ବିଦେଶୀ ବସ୍ତ୍ର ଦୋକନ ଆଗରେ ପିକେଟିଂ କରିବା ଇତ୍ୟାଦି ଏହି ସେନାର କାମ ଥିଲା । ସେମାନଙ୍କୁ ଧରି ନେଇ କୋର୍ଟରେ ବେତ ମାଡ ହୁଏ ଓ ସଂଧ୍ୟା ବେଳକୁ ନେଇ ବଣ, ଜଙ୍ଗଲ ରାସ୍ତାରେ ଛାଡି ଦିଆହୁଏ । ସେମାନେ ନିଜ ନିଜ ଗ୍ରାମକୁ ଯାଇ ସଂଗ୍ରାମର ବାର୍ତ୍ତା ପ୍ରଚାର କରନ୍ତି ଏବଂ ଲୋକଙ୍କଠାରୁ ଧନଜନ ସାହାଯ୍ୟ ପାଆନ୍ତି । ପ୍ରତିଦିନ ବାନର ସୈନିକ ମାନେ ବେତ ମାଡରେ ରକ୍ତାକ୍ତ ହୋଇ ଡରି ଯାଆନ୍ତିନି । ରମା ଦେବୀ ସେମାନଙ୍କୁ ନେଇ ଚିକିତ୍ସା କରନ୍ତି ଓ ଖାଇ ନ ପାରିଲେ ଖୁଆଇ ଦିଅନ୍ତି । ଏଥିରେ ହାକିମ ଓ ପୋଲିସ ଆଖିରୁ ଲୁହ ଝରିଲେ ସୁଦ୍ଧା ଇଂରେଜ ଭୂତକୁ ଭୟ କରି କାମ କରନ୍ତି ।

## ସଂଗ୍ରାମର ବ୍ୟାପକତା

କଂଗ୍ରେସକୁ ବେଆଇନ ଘୋଷଣା କରାଗଲା । କଂଗ୍ରେସ ପତାକା, ଫଳକ ସବୁ ନଷ୍ଟ କରାଗଲା । କଂଗ୍ରେସର ପିକେଟିଂ ଛଡା ଗୁଜରାଟରେ ଖଜଣା ବନ୍ଦ ଆନ୍ଦୋଳନ ହେଲା । ଲୋକମାନେ ଘରଦ୍ୱାର ଛାଡି ଚାଲିଗଲେ । ଶସ୍ୟକ୍ଷେତକୁ ନିଆଁ ଲଗାଇ ପୋଡି ଦେଲେ । ଲୋକମାନଙ୍କର ଜମିବାଡି ନିଲାମ ହେଲା ।

## ସତ୍ୟାଗ୍ରହର ନୂତନ ରୂପ

ସତ୍ୟାଗ୍ରହ ଯୋଗୁଁ ଲୋକମାନେ ବାଣିଜ୍ୟ, ବ୍ୟବସାୟ, ବିଜ୍ଞାନ, ସାହିତ୍ୟ ସବୁକ୍ଷେତ୍ରରେ ନୂତନ ଆଲୋକର ସନ୍ଧାନ ପାଇଲେ । ବ୍ରିଟିଶ ସରକାରଙ୍କ ଅନୁଗ୍ରହ ଉପରେ ଭରସା ରଖିଲେ ନାହିଁ । ଯେଉଁ ସ୍ୱପ୍ନ କଳ୍ପନା ରାଜବନ୍ଦୀ ମାନେ ଜେଲରେ ବସି କରୁଥିଲେ ତାହା ବର୍ତ୍ତମାନ ସାକାର ହେଲା । ବ୍ରିଟିଶ ସରକାରଙ୍କ ଅନୁଗ୍ରହକୁ ଗୌରବ ଅନୁଭବ କରିବା ପରିବର୍ତ୍ତନରେ କି ଧନୀ, ଦରିଦ୍ର, ଜମିଦାର, ଶେଠ, ବ୍ୟବସାୟୀ, କଳ କାରଖାନା ମାଲିକ କଂଗ୍ରେସ ପ୍ରଦତ୍ତ ସମ୍ମାନ ପାଇବାକୁ ମୁହାଁଇଲେ । ସ୍ୱାଧୀନତା ପାଇବା ପାଇଁ ଲେଖିବା, କହିବା ଓ କାର୍ଯ୍ୟକରିବା ଅଧିକାଂଶଙ୍କର ଲକ୍ଷ୍ୟ ହେଲା । ତ୍ୟାଗ ଓ ସେବାରେ ଜଣେ ଅନ୍ୟ

ଜଣକୁ ଟପିବାକୁ ଚାହିଁଲେ। ଏହିପରି ବହୁଭାବରେ ଜାତୀୟ ଜୀବନର ବିକାଶ ଘଟିଲା। ଏହି ସତ୍ୟାଗ୍ରହ ଦେଶରେ ଆଠ ଦଶମାସ ଚାଲିଲା। ସରକାରୀ ଦଳ ଏହାକୁ ଦମନ କରିବା ଧୈର୍ଯ୍ୟ ହରାଇଲେ। ତେଣୁ ଗୋଟାଏ ସମାଧାନ ପାଇଁ ସରକାର ସଂକେତ ଦେଲେ।

## ଗାନ୍ଧିଜୀଙ୍କ କାରା ମୁକ୍ତି ଓ ଶାନ୍ତି ସ୍ଥାପନ

ଲଣ୍ଡନରେ ଗୋଲ ଟେବୁଲ ବୈଠକ ପରେ ବଡଲାଟ ପ୍ରଧାନମନ୍ତ୍ରୀଙ୍କ ବାର୍ତ୍ତା କଂଗ୍ରେସକୁ ଜଣାଇ ଦେଲେ। ସତ୍ୟାଗ୍ରହ ବନ୍ଦ କରିବା କଂଗ୍ରେସ କାର୍ଯ୍ୟକାରୀ ସମିତିର ନାହିଁ ବୋଲି ଗାନ୍ଧିଜୀ ଜଣାଇ ଦେଲେ। ବେଆଇନ ଘୋଷିତ କଂଗ୍ରେସକୁ ଆଇନ ସମ୍ମତ କରି ଇରଉଇନ ସାହେବ ଉଦାରତାର ପରିଚୟ ଦେଲେ ଏବଂ କଂଗ୍ରେସ କାର୍ଯ୍ୟକାରୀ ସମିତିର ସବୁ ସଭ୍ୟଙ୍କୁ କାରାମୁକ୍ତ କରି ଦେଲେ। ଏଥିରେ ଦେଶରେ ଆନନ୍ଦ ଉଲ୍ଲାସ ଖେଳିଗଲା।

ମାତ୍ର ବନ୍ଦୀ ମଧ୍ୟରେ ମୋତିଲାଲ ନେହେରୁ ଗୁରୁତର ରୋଗ ଶଯ୍ୟାରେ ପଡିଥିଲେ। ତାଙ୍କୁ ଦେଖିବା ପାଇଁ ଗାନ୍ଧିଜୀ ଶୀଘ୍ର ତାଙ୍କ ନିକଟକୁ ଗଲେ ଏବଂ କହି ପକାଇଲେ "ଏଥର ଆମେ ସ୍ୱରାଜ୍ୟ ଜିତିବା"। ମୋତିଲାଲ୍ ଉତ୍ତର ଦେଲେ ସ୍ୱରାଜ୍ୟ ଦେଖିବାକୁ ସେ ରହି ପାରିବେ ନାହିଁ।

ସେହି ଫେବୃୟାରୀ ୬ ତାରିଖରେ ମୋତିଲାଲ୍ ନେହେରୁ ଇହଧାମ ତ୍ୟାଗ କଲେ। ତାଙ୍କର ମୃତ୍ୟୁ ସମସ୍ତ ସତ୍ୟାଗ୍ରହ ସଂଗ୍ରାମକୁ ଶିଥିଳ କରି ପକାଇଲା। ଗାନ୍ଧିଜୀଙ୍କର ସର୍ତ୍ତର କୌଣସି ଉତ୍ତର ବଡଲାଟଙ୍କ ପାଖରୁ ମିଳିଲା ନାହିଁ। ଯଥାପୂର୍ବ ଦମନଲୀଳା ଚାଲିଲା। ମୋତିଲାଲଙ୍କ ଶ୍ରାଦ୍ଧକର୍ମ ପରେ କଂଗ୍ରେସ କାର୍ଯ୍ୟକାରୀ ସମିତିର ବୈଠକ ବସିଲା। ବିଲାତର ଗୋଲ ଟେବୁଲ ବୈଠକରୁ ଫେରିଥିବା ତେଜବାହାଦୂର ସାପ୍ରୁ ଓ ଶ୍ରୀ ଜୟକାର ଓ ଶ୍ରୀ ନିବାସ ଶାସ୍ତ୍ରୀ ଘୋଷଣା କଲେ ଭାରତକୁ ଶୀଘ୍ର ଔପନିବେଶିକ ସ୍ୱାୟତ୍ତଶାସନ ଦିଆଯିବ।

ଶ୍ରୀ ସାପ୍ରୁ, ଶ୍ରୀ ଜୟକାର ଓ ଶ୍ରୀ ନିବାସ ଶାସ୍ତ୍ରୀ ପ୍ରଭୃତି ଗାନ୍ଧିଜୀ ଓ ବଡଲାଟଙ୍କ ମଧ୍ୟରେ ବାର୍ତ୍ତା ବିନିମୟ କରି ବଡଲାଟଙ୍କ ସହିତ ଗାନ୍ଧିଜୀଙ୍କର ବ୍ୟକ୍ତିଗତ ଆଲୋଚନା ପାଇଁ କ୍ଷେତ୍ର ପ୍ରସ୍ତୁତ କଲେ। ବଟଲାଟଙ୍କ ଠାରୁ ଉତ୍ତର ପାଇ ଗାନ୍ଧିଜୀ ଦିଲ୍ଲୀ ଗଲେ। କଂଗ୍ରେସ ତରଫରୁ ଜବାହାର ଲାଲ୍ ନେହେରୁ ଓ ସର୍ଦ୍ଦାର ପଟେଲ ପ୍ରସ୍ତାବ ରଖିଲେ ଯେ ଲୁଣ ଉପରୁ କର ଛାଡ, ବର୍ଦ୍ଦୋଳି ପ୍ରଜାଙ୍କର ନିଲାମ ଜମି ଫେରାଇବା ଓ ଦେଶର ସ୍ୱାଧୀନତା ଦାବୀକୁ ଗ୍ରହଣ କରାଯିବ।

ଏହି ଆଲୋଚନା କଂଗ୍ରେସ କାର୍ଯ୍ୟକାରୀ ସମିତି ଓ ବଡଲାଟ କାଉନସିଲର ଆଇସିଏସ୍ ମାନଙ୍କ ମଧ୍ୟରେ ଆଲୋଚିତ ହୁଏ। ବଡଲାଟ ଓ ମହାତ୍ମା ଗାନ୍ଧିଙ୍କ ଆଲୋଚନା ଉଭୟ କଂଗ୍ରେସ ସମିତି ଓ ବଡଲାଟ ପରିଷଦ ମଧ୍ୟରେ ଆଲୋଚିତ ହୁଏ। ଏହି ଉଭୟ ପରିଷଦର ଆଲୋଚନା ଗାନ୍ଧି ଇରଉଇନ ଚୁକ୍ତି ନାମରେ ପ୍ରକାଶ ପାଇଲା ୧୯୩୧ ମାର୍ଚ୍ଚ ୫ ତାରିଖରେ। ଏଣୁ ସତ୍ୟାଗ୍ରହ ସଂଗ୍ରାମ ସ୍ଥଗିତ ରଖାଗଲା ଏବଂ ସତ୍ୟାଗ୍ରହୀ ବନ୍ଦୀମାନଙ୍କୁ ଜେଲରୁ ମୁକ୍ତ କରି ଦିଆଗଲା।

## ଶ୍ରୀ ଜଙ୍ଗର ଦୁଃଖ

ବାଲେଶ୍ୱର ଜିଲ୍ଲାର ଶ୍ରୀ ଜଙ୍ଗ ମୌଜା ସତ୍ୟାଗ୍ରହ ସଂଗ୍ରାମରେ ଏକ ଉଲ୍ଲେଖନୀୟ ଘଟଣା। ଏହି ମୌଜାର ଶ୍ରୀ ଗୌର ମୋହନ ଦାସ ଜଣେ ବିଶିଷ୍ଟ ବ୍ୟକ୍ତି। ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଇଙ୍ଗିତରେ ଚୌକିଦାରୀ ଟିକସ ଏହି ଅଧିବାସୀମାନେ ବନ୍ଦ କଲେ। ଏଥିରେ ପୋଲିସର ଅତ୍ୟାଚାର ବଢିଲା। ଶ୍ରୀ ଗୌର ମୋହନ ଦାସଙ୍କର ସିନ୍ଧୁକ, ବାକ୍ସ, ପେଡି, ପେଟରା ଭଙ୍ଗା ଯାଇ ପୋଡ଼ାଗଲା। ପ୍ରଜାମାନଙ୍କର ଧନ, ସମ୍ପତ୍ତି ଲୁଟ ହେଲା ଓ ନିଲାମ କରାଗଲା। ପ୍ରଜାମାନଙ୍କ ଉପରେ ପିଟୁଣୀ ଟିକସ ବସିଲା। ଏଠି ଆନ୍ଦୋଳନ ପରିଚାଳନା କରିବାକୁ ନବ ବାବୁ ନ ରହି କଟକ ପଳାଇ ଆସିଲେ ଓ ଆଉ ବାଲେଶ୍ୱର ଫେରି ନଥିଲେ। ଏହି ସତ୍ୟାଗ୍ରହ ସାରା ଓଡିଶାର ଦୃଷ୍ଟି ଆକର୍ଷଣ. କରିଥିଲା।

ମହତାବ ବାବୁଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଗୋବିନ୍ଦ ବାବୁ ଖଡଗପୁରରେ ୨ ଦିନ ରହିଥିଲେ। ମହତାବ ବାବୁଙ୍କ ଏକ ଗୁପ୍ତ ଚିଠି ଆନ୍ଦୋଳନ ପରିଚାଳନା ବିଷୟରେ ଧରାପଡି ଯିବାରୁ ସେ ଆଉ ମୁକୁଳି ପାରିଲେ ନାହିଁ। ମାତ୍ର ଅନ୍ୟାନ୍ୟ ରାଜ ବନ୍ଦୀମାନଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ ଅଗଣିତ ନରନାରୀ ବାଲେଶ୍ୱର ଠାରୁ କଟକ ପର୍ଯ୍ୟନ୍ତ ଷ୍ଟେସନରେ ରୁଣ୍ଡ ହୋଇ ଥିଲେ।

ଗୋବିନ୍ଦ ବାବୁ କଟକରୁ ଚମ୍ପାପୁର ଗାନ୍ଧି ସେବାଶ୍ରମକୁ ଆସିଲେ। ସେଠାରୁ ବିଭିନ୍ନ ଶାଖା କେନ୍ଦ୍ରମାନଙ୍କୁ ବୁଲି ଗଲେ। ଆଶ୍ରମରେ କର୍ମୀମାନଙ୍କର ଅଭାବ ପୂରଣ କରିବା ପାଇଁ ପ୍ରଚୁର ଅର୍ଥ ଲୋଡା ଏବଂ ତାହା ହେଲେ କର୍ମୀ ମାନଙ୍କର ଅଭାବ ହେବ ନାହିଁ। ଆଶ୍ରମର ଆୟ ବ୍ୟୟର ହିସାବ ସେ ପ୍ରତିବର୍ଷ ପ୍ରକାଶ କଲେ। ଏଥିରେ ଶ୍ରୀ ଆକୁଳି ମିଶ୍ରଙ୍କ ପରାମର୍ଶରେ ଶ୍ରୀ ଅଲେଖ ପ୍ରସାଦ ଦାସ ଆୟ ବ୍ୟୟର ଖଣ୍ଡେ ରିପୋର୍ଟ ପ୍ରକାଶ କରି ସାରିଥିଲେ। ତାକୁ ଧରି ଗୋବିନ୍ଦ ବାବୁ କଟକ ଆସିଲେ।

## ଓଡିଶା କଂଗ୍ରେସରେ ଦଳ ସୃଷ୍ଟି

ମାର୍ଚ୍ଚ ମାସରେ ଅଖିଳ ଭାରତ କଂଗ୍ରେସ ଅଧିବେଶନ କରାଚୀର ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ସଭାପତିତ୍ୱରେ ବସିବାର ସ୍ଥିର ହୋଇଗଲା । ଏଣୁ ଏହି ଜାତୀୟ ସ୍ତରରେ ଯୋଗଦେବାକୁ ପ୍ରାଦେଶିକ ସ୍ତରରୁ ପ୍ରତିନିଧି ନିର୍ବାଚିତ ହେବାର ସ୍ଥିର ହେଲା । ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ପଦ ପାଇଁ ପଣ୍ଡିତ ନୀଳକଣ୍ଠ ଦାସ ଓ ଗୋପବଂଧୁ ଚୌଧୁରୀ ମଧ୍ୟରେ ପ୍ରତିଦ୍ୱନ୍ଦିତା ଚାଲିଲା । ଶେଷରେ ଗୋଟାଏ ନିଷ୍ପତ୍ତି ନିଆଗଲା ଯେ ଆଚାର୍ଯ୍ୟ ହରିହର ଦାସ ସଭାପତି, ଗୋପ ବାବୁ ଓ ନୀଳକଣ୍ଠ ଦାସ ଯୁଗ୍ମ ସଂପାଦକ ରୂପେ ନିର୍ବାଚିତ ହେଲେ ।

ଓଡିଶାରେ ଲବଣ ସତ୍ୟାଗ୍ରହର ସାଫଲ୍ୟ ଦୃଷ୍ଟିରୁ ଉତ୍କଳ କଂଗ୍ରେସ ଅଧିବେଶନ ବସାଇବା ପାଇଁ ଆବଶ୍ୟକତା ଅନୁଭୂତ ହେଲା । ତେଣୁ ଓଡିଶାର ସବୁ ଜିଲ୍ଲାରୁ ବହୁତ କଂଗ୍ରେସ କର୍ମୀ କଟକରେ ଏକତ୍ରିତ ହୋଇ ବୈଠକ ବସିଲା ।

ଗାନ୍ଧି ଇରଉଇନ୍ ଚୁକ୍ତି ବିରୁଦ୍ଧରେ ଏକ ଉଗ୍ରବାଦୀ ଯୁବ ଦଳ ବିକ୍ଷୋଭ ପ୍ରଦର୍ଶନ କରୁଥାନ୍ତି । ଇଂରେଜଙ୍କ ବିରୁଦ୍ଧରେ ଅହିଂସା ସଂଗ୍ରାମ ଅନ୍ୟାୟ ବା ପାପ ନୁହେଁ । ତା'ଛଡା ଇଂରେଜ ଜାତି ଅନୁଭବ କରିବ ଯେ ବଳପୂର୍ବକ ଶାସନ କରିବା ଅନ୍ୟାୟ ବୋଲି ଅନୁଭବ କରିବା ଉଚିତ ।

ଗାନ୍ଧି ଇରଉଇନ ଚୁକ୍ତି ଯୋଗୁଁ ଗୋରା ସିଭିଲିଆନ୍ ଅସ୍ୱସ୍ତି ବୋଧ କଲେ । ସେମାନେ ମହାତ୍ମା ଗାନ୍ଧି ଓ କଂଗ୍ରେସର ପ୍ରତିପତ୍ତି କ୍ଷୁର୍ଣ୍ଣ କରିବା ପାଇଁ ନାନା ଖେଳ ଖେଳିଲେ ।

୧୯୨୮ ମସିହାରେ ବ୍ରିଟିଶ ସରକାର ଭାରତକୁ ସାଇମନ୍ କମିଶନ ପଠାଇଲେ ଭାରତ ବାସୀ କେତେ ଦୂର ଯୋଗ୍ୟ ସ୍ୱାୟତ୍ତଶାସନ ପାଇବା ପାଇଁ । ଏହି କମିଶନ ସବୁଠାରେ ବିକ୍ଷୋଭର ସମ୍ମୁଖୀନ ହେଲା । ଲାହୋର ଠାରେ ଲାଲ୍ ଲଜପତ ରାୟ ବିକ୍ଷୋଭ ନେତୃତ୍ୱ ନେଇ ଲାଠି ପ୍ରହାର ଖାଇ ଶେଷରେ ପ୍ରାଣତ୍ୟାଗ କଲେ । ଏହାର ପ୍ରତିଶୋଧ ରୂପେ ୩ ଜଣ ଯୁବକ ଭଗତ ସିଂ, ରାଜଗୁରୁ ଓ ସୁଖଦେବ ଜଣେ ଗୋରା ପୋଲିସ କର୍ମଚାରୀଙ୍କୁ (ସଣ୍ଡରସନ୍) ହତ୍ୟା କଲେ । ତା'ପୂର୍ବରୁ ବଡଲାଟଙ୍କ ସଭାରେ ବୋମା ପକାଇ ଭଗତ ସିଂ ଜେଲରେ ଥିଲେ । ରାଜନୈତିକ ଷଡଯନ୍ତ୍ର ଅପରାଧରେ ଏହି ୩ ଜଣଙ୍କୁ ଫାଶୀ ଦଣ୍ଡା ଦେଶ ହେଲା । ଏହା ବିରୁଦ୍ଧରେ ସାରା ଦେଶରେ ବିକ୍ଷୋଭ ହେଲା । ଗାନ୍ଧିଜୀ ଅନୁନୟ କରି

ବଡଲାଟଙ୍କୁ ଏହି ୩ ଜଣ ଯୁବକଙ୍କୁ ମୁକ୍ତିପାଇଁ ଆବେଦନ କଲେ । ମାତ୍ର ବଡଲାଟ ଫାଶୀ ଦଣ୍ଡାଦେଶ କାଏମ ରଖିଲେ ।

ଗାନ୍ଧି ଇରଉଇନ୍ ଚୁକ୍ତି ବିରୁଦ୍ଧରେ ସୁଭାଷ ବୋଷ ବିଦ୍ରୋହୀ ଦଳର ନେତୃତ୍ୱ ନେଇଥିଲେ । ମାତ୍ର କରାଚୀ କଂଗ୍ରେସରେ ଗାନ୍ଧି ଇରଉଇନ୍ ଚୁକ୍ତି ଗୃହୀତ ହୋଇଗଲା । ଏହାଦ୍ୱାରା ମହାତ୍ମା ଗାନ୍ଧିଙ୍କ ପ୍ରଭାବ କଂଗ୍ରେସ ଉପରେ ପ୍ରମାଣିତ ହୋଇଗଲା । କିନ୍ତୁ କରାଚୀ ଅଧିବେଶନ ପୂର୍ବରୁ ୧୯୩୧ ମସିହା ମାର୍ଚ୍ଚ ୨୩ ତାରିଖରେ ଲାହୋର ଜେଲରେ ଏହି ୩ ଜଣଙ୍କୁ ଫାଶୀ କାଠରେ ଝୁଲାଇ ଦିଆଗଲା ।

## ଚମ୍ପାପୁର ଆଶ୍ରମ ପାଇଁ ଚାନ୍ଦା ସଂଗ୍ରହ

କରାଚୀ ଅଧିବେଶନ ପରେ ଗୋବିନ୍ଦ ବାବୁ ଚାନ୍ଦା ସଂଗ୍ରହ ପାଇଁ ବମ୍ବେ ଚାଲି ଗଲେ । ପୁରୀଠାରେ ଆଗାମୀ କଂଗ୍ରେସ ଅଧିବେଶନ ପାଇଁ ଉତ୍କଳ ପ୍ରଦେଶ କମିଟି ଗୋପବଂଧୁ ଚୌଧୁରୀଙ୍କୁ ପ୍ରସ୍ତାବ ଦେଲା । ପଣ୍ଡିତ ନୀଳକଣ୍ଠ ଦାସ ଜଣେ ପ୍ରବୀଣ ଓ ପୁରୁଖା ନେତା । ତାଙ୍କୁ ପଚରା ନ ଯିବାରୁ ସେ କ୍ଷୁବ୍ଧ ହୋଇ ଓଡିଶା ଫେରି ଆସିଲେ ।

ଏହି ଅନୁଷ୍ଠାନ ପାଇଁ ସେ କଲିକତା, ଦିଲ୍ଲୀ, ସୁରତ୍, ଅହମ୍ମଦା ବାଦ, ବମ୍ବେ ଓ ରେଙ୍ଗୁନ ଆଦି ସ୍ଥାନ ବୁଲିଛନ୍ତି । ଲୋକଙ୍କୁ ବିଶ୍ୱାସ କରାଇ ଚାନ୍ଦା ସଂଗ୍ରହ କରିବା କେତେ କଷ୍ଟ ସେ ବୁଝିଥିଲେ । କେତେ ଜଣ ବ୍ୟକ୍ତି ଥିଲେ ଯେଉଁମାନେ ନିୟମିତ ଚାନ୍ଦା ଦେଉଥିଲେ ଓ ଅନ୍ୟମାନେ ଠାରୁ ଚାନ୍ଦା ସଂଗ୍ରହ କରାଇ ଦେଉଥିଲେ । ଆଶ୍ରମ ପାଇଁ ଚୋଶ ହଜାର ଟଙ୍କା ସଂଗ୍ରହର ସେ ଲକ୍ଷ୍ୟ ରଖିଥିଲେ । ଆଶ୍ରମର ସ୍ଥାୟୀ ପାଣ୍ଠି ପାଇଁ ଏକ ଟ୍ରଷ୍ଟ ବୋର୍ଡ ଗଠନ ନିହାତି ଜରୁରୀ ଏବଂ ତାହା ଆଶ୍ରମ କର୍ମୀ ମାନଙ୍କ ମଧ୍ୟରୁ ଟ୍ରଷ୍ଟ ଗଠନ କରିବା ସେ ଚାହୁଁଥିଲେ । ଯାହା ହେଉ ଚାରି ହଜାର ଟଙ୍କା ଧରି ସେ ଓଡିଶା ଫେରିଲେ ।

ଓଡିଶାରେ କଂଗ୍ରେସ କମିଟି ବାର୍ଷିକ ଅଧିବେଶନ ବସିବା ଦୃଷ୍ଟିରୁ ଗୋବିନ୍ଦ ବାବୁ ସଂଗଠନ କାର୍ଯ୍ୟରେ ଲାଗିଲେ । ଆଶ୍ରମର ଖଦଡ କାର୍ଯ୍ୟ ପ୍ରଦର୍ଶନ ପାଇଁ ନୂଆ ବ୍ୟକ୍ତି ଯଥା ଶ୍ରୀ ନିରଞ୍ଜନ ନନ୍ଦ ଓ ଶ୍ରୀ ରତ୍ନାକର ମିଶ୍ର । ଏମାନଙ୍କୁ ଆଶ୍ରମର କେନ୍ଦୁପାଟଣା କେନ୍ଦ୍ରରେ ରଖାଗଲା । ଶ୍ରୀ ଚିନ୍ତାମଣି ଭୂୟାଁ କଟରପା ସୂତା କଟା କେନ୍ଦ୍ରର ଦାୟିତ୍ୱରେ ରହିଲେ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନ୍ତି ହିସାବ ରକ୍ଷକ ରହିଲେ ।

ଶ୍ରୀ ବୃନ୍ଦାବନ ଷଡଙ୍ଗୀ ଆଶ୍ରମ ଖଦଡ ବସ୍ତ୍ର ବୁଲାଇ ବିକ୍ରି କରିବା ଦାୟିତ୍ୱରେ ରହିଲେ । ଶ୍ରୀ ଭାଗବତ ପଟ୍ଟନାୟକ ଆଉ ଜଣେ କର୍ମୀ ନିଯୁକ୍ତ ହେଲେ । ଶ୍ରୀ ନରହରି ସ୍ୱାଇଁ କଟରପା କେନ୍ଦ୍ରରେ ଚିନ୍ତାମଣି ଭୂୟାଁଙ୍କୁ ସାହାଯ୍ୟ କରିବା ପାଇଁ ରହିଲେ । ଶ୍ରୀ ରଘୁନାଥ ପଣ୍ଡା କେନ୍ଦ୍ର ସବୁରର ପରିଚାଳନା, ହିସାବ ରଖିବାରେ ସାହାଯ୍ୟ କରିବେ ଓ ଆଶ୍ରମର ପରିପାର୍ଶ୍ୱର ଗ୍ରାମମାନଙ୍କରେ କାମ କରିବା ଦାୟିତ୍ୱରେ ରହିଲେ । ଡାକ୍ତର କୃପାସିନ୍ଧୁ ପଣ୍ଡା ଆଶ୍ରମର ଡାକ୍ତରଖାନା ପରିଚାଳନା କରୁଥାନ୍ତି । ଖଦଡ ରଙ୍ଗାଇବା ଓ ଛପାଇବା ପାଇଁ ଜଣେ ମୁସଲମାନ କର୍ମୀ ରହିଲେ । ତାଙ୍କ ଠାରୁ ରଙ୍ଗ କାମ ଶିଖିବା ପାଇଁ ଶ୍ରୀ ବିଶ୍ୱକେତନ ଡାକୁଆ ରହିଲେ । ଶ୍ରୀ ଦାମୋଦର ସାହୁ ଖଦଡ କାମ ଶିଖିବା ପାଇଁ ସାବରମତୀ ଆଶ୍ରମକୁ ଗଲେ । ଶ୍ରୀ ଅଲ୍ଲେଖ ପ୍ରସାଦ ଦାସଙ୍କ ଉପରେ ଆଶ୍ରମର ସମସ୍ତ ଦାୟିତ୍ୱ ଦେଇ ପୁରୀ କଂଗ୍ରେସ ଅଧିବେଶନରେ ଯୋଗ ଦେବାକୁ ଗୋବିନ୍ଦ ବାବୁ ଆଶ୍ରମ ଛାଡିଲେ ।

## ଅଭ୍ୟର୍ଥନା ସମିତି ବୈଠକ

କଂଗ୍ରେସ କମିଟି ଅଧିବେଶନ ବସିବାର ସ୍ଥାନ ନେଇ ପ୍ରତିଯୋଗିତା ଚାଲିଲା. କଟକ ଜିଲ୍ଲାରେ ଅଧିକ ସଂଖ୍ୟକ (୨୦୦ ସଭ୍ୟ) ସଭ୍ୟ ସଂଗୃହିତ ହୋଇଥିଲା ଅନ୍ୟ ଜିଲ୍ଲା ଅପେକ୍ଷା । ମାତ୍ର ପଣ୍ଡିତ ନୀଳକଣ୍ଠ ଦାସ ରାଜନୈତିକ ଜୀବନରେ ହାର ହେବ ଜାଣି ପୁରୀରୁ ପଣ୍ଡା ପଡିହାରୀଙ୍କୁ ବୁଝାଇ ଅଧା ସଭ୍ୟ ଚାନ୍ଦା ନେଇ ସଭ୍ୟ କରାଇଲେ ଓ ଅଧା ଚାନ୍ଦା ନିଜେ କରଜ କରି ଶୁଝିଲେ । ସଭ୍ୟ ଚାନ୍ଦା ଟ୨୫ଙ୍କା ଥିଲା । ଏଥିରେ କଟକ ଜିଲ୍ଲାର ସଭ୍ୟମାନଙ୍କ ମନରେ କ୍ଷୋଭ ହେଲା । ଗୋବିନ୍ଦ ବାବୁ ଗାଁକୁ ଗାଁ ବୁଲି ବଡଚଣା, ଟାଙ୍ଗି, ମାହାଙ୍ଗା ଓ ଧର୍ମଶାଳା ଅଞ୍ଚଳରେ ସଭ୍ୟ ସଂଗ୍ରହ କଲେ । ଏହି ସମୟରେ ମହାତ୍ମା ଗାନ୍ଧିଙ୍କ ଦାଣ୍ଡିଯାତ୍ରା ଆରମ୍ଭ ହେଲା । ସାବରମତୀ ଆଶ୍ରମ ଖଦି ତାଲିମକେନ୍ଦ୍ର ହୋଇଥାଏ । ମହାତ୍ମା ଗାନ୍ଧି ଗୁଜରାଟ ଛାଡି ୱାର୍ଦ୍ଧା ଆଶ୍ରମରେ ରହିବା ପାଇଁ ସ୍ଥିର କଲେ । ଗୁଜରାଟବାସୀଙ୍କ ମନରେ ଦୁଃଖ ହେବାରୁ ସର୍ଦ୍ଦାର ପଟେଲ ସାନ୍ତ୍ୱନା ଦେଲେ ଯେ ସେ ମହାତ୍ମାଜୀଙ୍କୁ ଫେରାଇ ଆଣିବେ । ସାବରମତୀ ଆଶ୍ରମ ଗଠନରେ ଗୋବିନ୍ଦ ବାବୁଙ୍କ ହାତ ଥିଲା ଓ ବିନୋବାଜୀ ଏକାଠି ଗୋଟିଏ ତମ୍ବୁରେ ରହୁଥିଲେ । ଦୁହେଁ ଏକାଠି ବାସନ ମାଜିବା, ଗହମ ପେଷିବା ଓ ଭୋଜନ କରିଛନ୍ତି । ସେଠି କାକା କାଲେଲ୍‌କର, ମହାଦେବ ଦେଶାଇ, ଦେବି ଦାସ, ଇମାମ ସାହେବ ଓ କସ୍ତୁରବା ପ୍ରଭୃତି ମଧ୍ୟ ରହୁଥିଲେ ।

ଇତି ମଧ୍ୟରେ ବିଲାତରେ ନିର୍ବାଚନରେ ଜାତ ଦଳ ଆସିବାରୁ ଇରଉଇନଙ୍କ ପରିବର୍ତ୍ତେ ଲର୍ଡ ୱେଲିଂଡନ୍ ଭାରତର ବଡଲାଟ ହେଲେ । ସେ ଇରଉଇନ୍ ଓ ଗାନ୍ଧି ଚୁକ୍ତିକୁ ମାନିବାକୁ ପ୍ରସ୍ତୁତ ନଥିଲେ । ସେ ପୂର୍ବରୁ ମାନ୍ଦ୍ରାଜ ଓ ବମ୍ବେର ଲାଟ ଥିଲେ । ତେଣୁ ରାଜନୈତିକ ଆନ୍ଦୋଳ କଥା ତାଙ୍କୁ ଜଣାଥିଲା । ମହାତ୍ମା ଗାନ୍ଧି ଲର୍ଡ ୱେଲିଂଡନ୍‌ଙ୍କୁ ସାକ୍ଷାତ କରିବାକୁ ଇଚ୍ଛା ପ୍ରକାଶ କରିଥାନ୍ତି ।

ପୁରୀଠାରେ କଂଗ୍ରେସ ଅଧିବେଶନ ପାଇଁ ଅଭ୍ୟର୍ଥନା ସମିତିର ବୈଠକରେ ପଣ୍ଡିତ ନୀଳକଣ୍ଠ ଦାସ ଚେୟାରମାନ, ଶ୍ରୀ ଗୋପବଂଧୁ ଚୌଧୁରୀ ସଂପାଦକ ଓ ଶ୍ରୀ ହରେକୃଷ୍ଣ ମହତାବ ସେବାଦଳ ଅଧ୍ୟକ୍ଷ ବଛା ଗଲେ । ନିଜର ସ୍ୱାର୍ଥ ଓ କଳ୍ପନାକୁ କାର୍ଯ୍ୟକାରୀ କରିବା ପାଇଁ କୌଣସି ଅନୁଷ୍ଠାନକୁ ଅଧିକାର କରିବା ସକାଶେ ଦଳ ଭିତରେ ଗୋଷ୍ଠୀ ବିବାଦ ସୃଷ୍ଟି ହୁଏ । ତାହା କଂଗ୍ରେସ ଦଳ ଭିତରେ ହେଉଥିଲା । ଏଥିରେ କୌଣସି ଆଦର୍ଶଗତ ବିବାଦ ନଥିଲା । ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ପଦ, ବୈଠକ ବସାଇବାକୁ ସ୍ଥାନ ନିରୂପଣ ନେଇ ମଧ୍ୟ ବିବାଦ ହେଉଥିଲା । ୧୯୨୧ ମସିହାଠାରୁ କଂଗ୍ରେସର ଜନ୍ମ । ସେହିଦିନ ଠାରୁ ୧୯୩୦ ପର୍ଯ୍ୟନ୍ତ ସମସ୍ତେ ଗୋଟିଏ ପରିବାରର ସଦସ୍ୟ ଭଳି ଚଳୁଥିଲେ । କିନ୍ତୁ ତାପରଠାରୁ ଆଉ ସେ ଭାବ ରହିଲା ନାହିଁ ।

## ଗଡଜାତ ପ୍ରଜା ସମ୍ମିଳନୀ

ବ୍ୟକ୍ତିଗତ ପ୍ରତିଷ୍ଠା ପାଇଁ ଉତ୍କଳ କଂଗ୍ରେସ ଦଳ ଭିତରେ ୨ଟି ଦଳ ସୃଷ୍ଟି ହୋଇଥିଲା । ପୁରୀଠାରେ କଂଗ୍ରେସ ଅଧିବେଶନକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ କଂଗ୍ରେସ ସଭ୍ୟମାନେ ଲାଗି ପଡିଲେ । ମହାତ୍ମା ଗାନ୍ଧିଙ୍କର ମଧ୍ୟ ଧାରଣା ଥିଲା ଯେ ଓଡିଶାର ଲୋକମାନେ ଗୋଟାଏ ବଡ ସଂଗଠନ କରି ପାରନ୍ତି ନାହିଁ ।

ଗୋବିନ୍ଦ ବାବୁ ପୁରୀ କଂଗ୍ରେସ ଅଧିବେଶନ ପାଇଁ କାର୍ଯ୍ୟ କରିବା ସହିତ ଚମ୍ପାପୁର ଆଶ୍ରମ କାର୍ଯ୍ୟ ପ୍ରତି ଦୃଷ୍ଟି ରଖିଥାନ୍ତି । ଲବଣ ସତ୍ୟାଗ୍ରହ ବେଳେ ଗଡଜାତର କେତେ ଜଣ ଯୁବକ କାରାବରଣ କରିଥାନ୍ତି । କିନ୍ତୁ ରାଜରାଜୁଡା ଶାସନରେ ସେମାନଙ୍କ ଦୁଃଖ ବୁଝିବାକୁ କେହି ନଥିଲେ । ଗଡଜାତ ରାଜାଙ୍କର ନିରଙ୍କୁଶ ଶାସନକୁ ଦୃଢିଭୂତ କରିବା ପାଇଁ ଇଂରେଜ ସରକାର, "ପ୍ରିନ୍‌ସେସ୍ ପ୍ରୋଟେକ୍‌ସନ୍ ଆକ୍ଟ", ଆଇନ ତିଆରି କଲେ । ପ୍ରଜାମାନଙ୍କର ଦୁଃଖ ବୁଝିବା ପାଇଁ ରାଜା ବା ପଲ୍‌ଟିକାଲ୍ ଏଜେଣ୍ଟଙ୍କ ପାଇଁ କିଛି ବ୍ୟବସ୍ଥା ରହିବା ଉଚିତ ବୋଲି ଗୋବିନ୍ଦ ବାବୁ ଭାବୁଥିଲେ । ଲବଣ ସତ୍ୟାଗ୍ରହ ପୂର୍ବରୁ ଗୋବିନ୍ଦ ବାବୁ ସ୍କୁଲ,

କଲେଜ ଛାତ୍ର ଛାତ୍ରୀଙ୍କୁ ଡକାଇ ସଭା କରି ଗଡଜାତ ବିଷୟରେ ଆଲୋଚନା କରିଥିଲେ । ଭାରତୀୟ ଦେଶୀୟ ରାଜ୍ୟ ପ୍ରଜାସମ୍ମିଳନୀ ଅନେକ ଥର ବସିଥିଲା । କିନ୍ତୁ ଓଡିଶାରେ ସେ ପର୍ଯ୍ୟନ୍ତ କୌଣସି ପ୍ରତିକ୍ରିୟା ସୃଷ୍ଟି ହୋଇନଥିଲା । ଗୋବିନ୍ଦ ବାବୁ ପ୍ରଥମ କରି ଓଡିଶୀ ଗଡଜାତ ପ୍ରଜା ପରାମର୍ଶ ଦାତା କମିଟି ଗଠନ କରିଥିଲେ ।

ଦଶପଲ୍ଲା ମେଳି ସମୟରେ ସାପ୍ତାହିକ 'ଆଶା' କାଗଜରେ ଗୋବିନ୍ଦ ବାବୁ ଲେଖା ବାହାର କରୁଥିଲେ । ଏହାର ସଂପାଦକ ଥିଲେ ଶ୍ରୀଯୁକ୍ତ ଶଶୀଭୂଷଣ ରଥ । ପ୍ରଜାମେଳି ସମ୍ମିଳନୀ ପ୍ରଥମେ କଟକରେ କବିରାଜ ଶ୍ରୀଯୁକ୍ତ ବାଲୁକେଶ୍ୱର ଆଚାର୍ଯ୍ୟଙ୍କ ପ୍ରାଙ୍ଗଣରେ ବସିଲା ଏଥିରେ ଶ୍ରୀଯୁକ୍ତ ରାଧାନାଥ ରଥ ମଧ୍ୟ ଯୋଗ ଦେଇଥିଲେ । ବୈଧାନିକ ଭାବରେ ଗଡଜାତ ପ୍ରଜାଙ୍କ ସକାଶେ କାର୍ଯ୍ୟ କରିବାପାଇଁ ପ୍ରତିନିଧି ମୂଳକ ସଂଗଠନର ମୂଳଭିତ୍ତି ସ୍ଥାପିତ ହେଲା । ୧୯୩୧ ମସିହା ଜୁନ ମାସର ଶେଷ ଆଡକୁ କଟକରେ ଓଡିଶା ଗଡଜାତ ପ୍ରଜାସମ୍ମିଳନୀ ବୈଠକ ବସିଥିଲା । ସେଥିରେ ଗଡଜାତ ସମୂହର ପରିସ୍ଥିତି ଓ ଭବିଷ୍ୟତ ରୂପରେଖ ଆଲୋଚିତ ହୋଇଥିଲା । ଗଡଜାତ ଶାସନ ସମ୍ପୂର୍ଣ୍ଣ ଅନ୍ଧାରୀ ଶାସନ । ଆଇନ କାନୁନ କିଛି ନ ଥାଏ । ଶାସନ ବିଷୟରେ କିଛି କରିବା ରାଜ ଅପରାଧ ବୋଲି ବିବେଚିତ ହେଉଥିଲା ।

ଓଡିଶାରେ ଉପକୂଳ ଅଞ୍ଚଳ ବ୍ରିଟିଶ ଶାସିତ, ଏହାକୁ ମୋଗଲ ବନ୍ଦୀ କୁହାଯାଉଥିଲା । ମୋଗଲ ବନ୍ଦୀରେ ରାଜନୈତିକ ଆନ୍ଦୋଳନ ସୃଷ୍ଟି ହୋଇ ସାରିଥାଏ । ଏହାର ପ୍ରଭାବ ଗଡଜାତ ଅଞ୍ଚଳ ଉପରେ ମଧ୍ୟ ପଡିଲା । ଗଡଜାତ ପ୍ରଜାଙ୍କର ସଂଗଠନ ଗୋବିନ୍ଦଜୀ କରିଥିଲେ । 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ ଏହି ପ୍ରଜା ସମ୍ମିଳନୀରେ ୧ମ ବୈଠକରେ ସହଯୋଗ କରିଥିଲେ । ନିଖିଳ ଭାରତ ପ୍ରଜାସମ୍ମିଳନୀ ସହିତ ଓଡିଶା ଗଡଜାତ ପ୍ରଜାସମ୍ମିଳନୀ ଯୁକ୍ତ ହେଲା । ନିଖିଳ ଭାରତ ପ୍ରଜାସମ୍ମିଳନୀର ସ୍ଥାୟୀ କମିଟିର ସଭାପତି ଥିଲେ ଶ୍ରୀ ଜବାହରଲାଲ୍ ନେହେରୁ ।

## କଟକରେ ଖଦଡ ଭଣ୍ଡାର ଉଦ୍‌ଘାଟନ

ଗୋବିନ୍ଦ ବାବୁ ପ୍ରଜାସମ୍ମିଳନୀ ବୈଠକ ପରେ ଚମ୍ପାପୁର ଆଶ୍ରମକୁ ଫେରିଲେ । ଦେଖିଲେ ସବୁ କାର୍ଯ୍ୟ ଅଚଳ ଅବସ୍ଥାକୁ ଆସିଯାଇଛି । ଦଶହଜାର ଟଙ୍କାର ଖଦଡ ବିକ୍ରୀ ନ ହୋଇ ପଡି ରହିଛି । ଗୋବିନ୍ଦଜୀ ନିଜେ ଖଦଡ ଲୁଗା

କାନ୍ଧରେ ପକାଇ କଟକରେ ବିକ୍ରୀ କରୁଥିଲେ। ସେତେବେଳେ ଲୋକେ ଖଦଡ ପିନ୍ଧିବାକୁ ଡରୁଥିଲେ। ଖଦଡ ଲୁଗାର ମୂଲ୍ୟ ଅଧିକ ଥିଲା. ଖଦଡ କାମରେ କ୍ଷତି ସହିବାକୁ ପଡେ।

କଟକରେ ଚର୍‌ଖା ସଂଘର ଖଦଡ ଭଣ୍ଡାର ଥିଲା। ଆଶ୍ରମ (ଚମ୍ପାପୁର)ରେ ଖଦଡ ଭଣ୍ଡାର ଉଦ୍‌ଘାଟନ ପାଇଁ ସ୍ଥିର କଲେ। ଓଡିଶାର ୨ ଜଣ ବିଶିଷ୍ଟ ବ୍ୟକ୍ତି ପଣ୍ଡିତ ନୀଳକଣ୍ଠ ଦାସ ଓ ଶ୍ରୀ ଗୋପବଂଧୁ ଚୌଧୁରୀଙ୍କୁ ମନୋନୀତ କଲେ। ପଣ୍ଡିତ ନୀଳକଣ୍ଠ ଦାସ ଓ ଶ୍ରୀ ଗୋଦାବରୀଶ ମିଶ୍ର ପ୍ରଭୃତି ପଣ୍ଡିତ ଗୋପବଂଧୁ ଦାସଙ୍କ ସହକର୍ମୀ ହିସାବରେ ଗୋବିନ୍ଦ ବାବୁଙ୍କର ସଂପର୍କ ଥିଲା। ୧୯୨୩ ମସିହାରେ ସତ୍ୟବାଦୀ ସ୍କୁଲ ପାଇଁ ବମ୍ବେରୁ ୫ ହଜାର ଟଙ୍କା ସାହାଯ୍ୟ ଗୋବିନ୍ଦ ବାବୁ ଯୋଗାଡ଼ କରି ଦେଇଥିଲେ।

କଟକ ଜିଲ୍ଲାର କର୍ମୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଗୋବିନ୍ଦ ବାବୁ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଉଦ୍‌ଘାଟକ ଭାବେ ନ ଡାକି ଶ୍ରୀ ଗୋପବଂଧୁ ଚୌଧୁରୀଙ୍କୁ ନିମନ୍ତ୍ରଣ କଲେ। ମାତ୍ର ତାଙ୍କର ଉଦ୍‌ଘାଟନ ଭାଷଣ ଉତ୍ସାହପୂର୍ଣ୍ଣ ନ ଥିଲା। ସେ ଦିନ ତିନି ହଜାର ଟଙ୍କାର ଖଦଡ ଲୁଗା ବିକ୍ରୀ ହୋଇଥିଲା। ଆଶ୍ରମ ପାଇଁ ଚାନ୍ଦା ସଂଗ୍ରହ କରିବା ଓ କୋଠା କରିବା ଗୋପ ବାବୁ ଚାହୁଁନଥିଲେ। ସେ ସରଳ, ନିରାଡମ୍ବର ପ୍ରକୃତିର ଲୋକ ଥିଲେ। କାହାର ସୁଖ ଦୁଃଖରେ ଭାଗ ନେଉ ନଥିଲେ। ସମସ୍ତଙ୍କଠାରୁ ଦୂରରେ ରହିବାକୁ ଚାହୁଁଥିଲେ।

ଓଡିଶାରେ ରାଜନୈତିକ କାର୍ଯ୍ୟ ପାଇଁ କର୍ମୀମାନଙ୍କର ଆନ୍ତରିକ ତାର ଅଭାବ ପରିଲକ୍ଷିତ ହୁଏ। ପରସ୍ପର ସହଯୋଗ ପରିବର୍ତ୍ତେ ଈର୍ଷା, ଅସୂୟା ଓ ବ୍ୟକ୍ତି ପ୍ରତିଷ୍ଠା, ଓ ଅଧିକାର ମନୋଭାବ ଥାଏ। ଏସବୁ ଦେଖି ପଣ୍ଡିତ ଗୋପବଂଧୁ ଦାସ ଜୀବନ କାନ୍ଦି କାନ୍ଦି ଯାଇଛି। ଚମ୍ପାପୁର ଆଶ୍ରମ ପାଇଁ ଏକ ହଜାର ଟଙ୍କା ଦେଇ ସେ ପୁରୀରେ କଂଗ୍ରେସ ଅଧିବେଶନ କାର୍ଯ୍ୟ ପାଇଁ ଗଲେ।

ଗାନ୍ଧି ଇରଉଇନ୍ ଚୁକ୍ତି କରାଚୀ କଂଗ୍ରେସ ଅଧିବେଶନରେଗୃହୀତ ହୋଇଥିବାରୁ କଂଗ୍ରେସ ନେତୃବର୍ଗ ଗୋଲଟେବୁଲ ବୈଠକରେ ଯୋଗ ଦେବାରଥାଏ। ମାତ୍ର ହିନ୍ଦୁ ମୁସଲ୍‌ମାନ ମାନଙ୍କ ମଧ୍ୟରେ ଭେଦଭାବ ଦୂର ନ ହୋଇଥିବାରୁ ମହାତ୍ମା ଗାନ୍ଧି ଗୋଲ ଟେବୁଲ ବୈଠକକୁ ଯିବାକୁ ଇଚ୍ଛା କଲେ ନାହିଁ। ସରକାର କଂଗ୍ରେସ ସହିତ ଚୁକ୍ତି ଖିଲାପ କରି କଂଗ୍ରେସକୁ ଦୋଷ ଦେଉଥାନ୍ତି। ସୀମାନ୍ତ ପ୍ରଦେଶରେ ଅରାଜକତା ଚାଲିଥାଏ। ଯୁକ୍ତପ୍ରଦେଶରେ

କୃଷକ ମାନଙ୍କଠାରୁ ଚୁକ୍ତି ଖିଲାପ କରି ବଳପୂର୍ବକ ଖଜଣା ଆଦାୟ କରାଯାଉଥାଏ ।

ସରକାରଙ୍କ ଚୁକ୍ତି ଖିଲାପର ପ୍ରମାଣ ସଂଗ୍ରହ କରି ଏକ ରିପୋର୍ଟ ଧରି ମହାତ୍ମା ଗାନ୍ଧି ବଡଲାଟ ଇରଉଇନ୍‌ଙ୍କୁ ଦେଖାକଲେ । ଅଭିଯୋଗ ଥିଲା ସରକାରୀ କର୍ମଚାରୀଙ୍କ ମନ ଇଚ୍ଛା ଶାସନ ଏଥିରେ କଂଗ୍ରେସ ନୀରବ ନ ରହି ତାର ବାଟ ଧରିବ ବୋଲି ଗାନ୍ଧିଜୀ ଯୁକ୍ତି କଲେ । କଂଗ୍ରେସ ଗୋଲ ଟେବୁଲ ବୈଠକରେ ଯୋଗ ନ ଦେଲେ ରାଜନୈତିକ ପ୍ରଶ୍ନର ସମାଧାନ ହୋଇ ପାରିବ ନାହିଁ ଜାଣି ବଡଲାଟ କୌଣସି ଚୁକ୍ତି ଖିଲାପ କରିବେ ନାହିଁ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲେ । କଂଗ୍ରେସ ବାଛିଥିବା ଜଣେ ବା ୨ ଜଣ ପ୍ରତିନିଧିହ୍‌କୁ ବଡଲାଟ ଗୋଲ ଟେବୁଲ ବୈଠକରେ ଯୋଗଦେବାକୁ ସୁପାରିଶ କରିବେ ।

ବଡଲାଟଙ୍କ ପ୍ରତିଶ୍ରୁତି କିଛି ପାଳିତ ହେଉଥିବାର ସୂଚନା ମିଳିଲାନି । ତେଣୁ ଦେଶରେ ପୁଣି ହିଂସାକାଣ୍ଡ ଘଟିଲା । ବଡଲାଟଙ୍କ ଉପରକୁ ଜଣେ ଛାତ୍ର ବମ୍ବେର ଫର୍ଗୁର୍ସନ କଲେଜର ଗୁଳି ଚଳାଇଲା । ମେଦିନୀପୁରରେ ଗୋରା କର୍ମଚାରୀ ମାନଙ୍କୁ ହତ୍ୟା କରାଗଲା । ଇତି ମଧ୍ୟରେ ବମ୍ବେରେ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ବସିଲା । ସେଥିରେ ଗୋବିନ୍ଦ ବାବୁ ଯୋଗ ଦେଲେ । ସାଙ୍ଗରେ ଦାମୋଦର ସାହୁଙ୍କୁ ନେଇଯାଇଥିଲେ । ଉଦ୍ଦେଶ୍ୟ ଥିଲା ସାବରମତୀ ଆଶ୍ରମରେ ତାଙ୍କୁ ଖଦି କାମରେ ତାଲିମ ଦେଇ ପୁଣି ଆଣି ଚମ୍ପାପୁର ଆଶ୍ରମରେ ରଖାଇବେ । ସେ ମାଟ୍ରିକ ପାଶ୍ କରିଥିଲେ ।

ଅଗଷ୍ଟ ସାତ ତାରିଖରେ ବମ୍ବେରେ କଂଗ୍ରେସ ବୈଠକ ବସିଲା । ଦେଶରେ ଘଟିଥିବା ହିଂସାକାଣ୍ଡର ନିନ୍ଦା କରାଗଲା । ଗୋଲ ଟେବୁଲ ବୈଠକରେ ଯୋଗ ଦେବାପାଇଁ ଗାନ୍ଧିଜୀଙ୍କୁ ବଛା ହେଲା । ଦେଶରେ ଶାନ୍ତି ସ୍ଥାପନ ନ ହେଲେ ସେ ଯୋଗ ଦେବେନି ବୋଲି ମନା କରି ଦେଲେ । ଚୁକ୍ତିଭଙ୍ଗର ତଦନ୍ତ କମିଟି ରିପୋର୍ଟ ନ ଦେବା ପର୍ଯ୍ୟନ୍ତ କଂଗ୍ରେସ ଗୋଲ ଟେବୁଲ ବୈଠକରେ ଯୋଗ ଦେବାକୁ ମନା କରି ଦେଲା । ଶେଷରେ ବ୍ରିଟିଶ ପାର୍ଲାମେଣ୍ଟ ଆଗରେ ନିଜରେ ଅପାରଗତାକୁ ପ୍ରମାଣିତ ନ କରିବା ପାଇଁ ବଡଲାଟ ସମିଳାକୁ ଗାନ୍ଧିଜୀଙ୍କୁ ଡକାଇଲେ । ଗାନ୍ଧିଜୀ ସର୍ଦ୍ଦାର ପଟେଲ, ଡାକ୍ତର ଆନସାରୀ, ସୀମାନ୍ତ ଗାନ୍ଧି ଓ ଶ୍ରୀ ଜବାହର ଲାଲ୍ ନେହେରୁଙ୍କୁ ନେଇ ସିମଳା ଗଲେ । ଅଗଷ୍ଟ ୨୫ ତାରିଖରେ ବଡଲାଟଙ୍କ ସହିତ କଂଗ୍ରେସ ନେତୃବର୍ଗଙ୍କର ଆଲୋଚନା ହେଲା ।

ଏହି ୨ୟ ଥର ଆଲୋଚନାରେ ୩ଟି କଥା ସ୍ଥାନିତ ହେଲା ଚୁକ୍ତି ପତ୍ରରେ। ଯଥା:

୧. ବର୍ଦ୍ଦୋଲି ତାଲୁକରେ ଜଣେ ଜିଲ୍ଲା ମାଜିଷ୍ଟ୍ରେଟ୍ ତଦନ୍ତ କରିବେ ଓ ଅନ୍ୟ ସ୍ଥାନରେ ସ୍ଥାନୀୟ ପ୍ରଶାସନ ତଦନ୍ତ କରିବେ।

୨. ମହାତ୍ମା ଗାନ୍ଧି ଏକମାତ୍ର ପ୍ରତିନିଧି ହୋଇ ଗୋଲ ଟେବୁଲ ବୈଠକରେ ଯୋଗ ଦେବେ।

୩. ଶାସନ ବିଭାଗର ତଦନ୍ତ ରିପୋର୍ଟରେ ଯଦି କଂଗ୍ରେସର ମନ ନ ମାନେ ତାହା ହେଲେ କଂଗ୍ରେସ ଉଚିତ ପଦକ୍ଷେପ ନେବାକୁ ଦ୍ୱିଧାବୋଧ କରିବ ନାହିଁ। ଏକ ସ୍ୱତନ୍ତ୍ର ରେଳଗାଡିରେ ମହାତ୍ମା ଗାନ୍ଧି ସିମଳାରୁ ଆସି ୨୯ ତାରିଖରେ ବିଲାତ ଯାତ୍ରା କଲେ।

ଗାନ୍ଧିଜୀଙ୍କର ଗୋଲ ଟେବୁଲ ବୈଠକରେ ଯୋଗ ଦେବା ଏକ ଐତିହାସିକ ଘଟଣା। ଅହିଂସା ପୂର୍ଣ୍ଣ ଆନ୍ଦୋଳନ ପ୍ରତି ପୃଥିବୀର ବିଭିନ୍ନ ଦେଶ ଲୋକଙ୍କର ଦୃଷ୍ଟି ନିବଦ୍ଧ ଥାଏ। ଲଣ୍ଡନ ଯିବା ବାଟରେ ଗାନ୍ଧିଜୀ ସର୍ବତ୍ର ସ୍ୱାଗତ ସମ୍ଭାଷଣ ଲାଭ କରୁଥାନ୍ତି।

କଂଗ୍ରେସ ଭିତରେ ଓ ବାହାରେ ଦଳେ ଯୁବଗୋଷ୍ଠୀ ଥିଲେ ଯାହାଙ୍କୁ ବାମପନ୍ଥୀ ବୋଲି କୁହାଯାଏ ସେମାନେ ଗାନ୍ଧି ଇରଉଇନ୍ ଚୁକ୍ତି ଓ ଗାନ୍ଧିଜୀଙ୍କର ଗୋଲ ଟେବୁଲ ବୈଠକରେ ଯୋଗଦାନକୁ ତୀବ୍ର ସମାଲୋଚନା କରୁଥାନ୍ତି ଓ ବିକ୍ଷୋଭ ପ୍ରଦର୍ଶନ ମଧ୍ୟ କରିଥିଲେ ଓ ବିଦ୍ରୋହ କାର୍ଯ୍ୟ ବୋଲି ବର୍ଣ୍ଣନା କରିଥିଲେ। ଏହି ବୈଠକକୁ ଭଣ୍ଡୁର କରିବା ପାଇଁ କଂଗ୍ରେସ ସହିତ ଏକମତ ନ ହେଉଥିବା ପ୍ରତିନିଧି ଯଥା ରାଜନ୍ୟ ମଣ୍ଡଳିର ପ୍ରତିନିଧି, ମୁସଲିମ୍ ଲିଗ୍ର ପ୍ରତିନିଧି ମିଃ ଜିନ୍ନା, ଏବଂ ତଫସିଲଭୁକ୍ତ ଦଳର ପ୍ରତିନିଧି ଡଃ ଆମ୍ବେଦକର ପ୍ରଭୃତିଙ୍କୁ ଇଂରେଜ ସରକାର ମନୋନୟନ କରି ପଠାଇଲେ। ଏମାନେ ଗାନ୍ଧିଜୀଙ୍କ କଥାରେ ରାଜି ହେଲେନି କି ଏକଜୁଟ ହେଲେନି ଏବଂ ଆଲୋଚନାରେ ଅନ୍ତରାୟ ସୃଷ୍ଟି କଲେ। ତେଣୁ ଗୋଲ ଟେବୁଲ ବୈଠକ ବିଫଳ ହେଲା। ଗାନ୍ଧିଜୀ ବ୍ୟର୍ଥ ହୋଇ ଫେରିଲେ ଏବଂ ଭାବିଲେ ଏମାନେ ପ୍ରକୃତରେ ଲୋକ ପ୍ରତିନିଧି ନୁହନ୍ତି, ଇଂରେଜ ସରକାରଙ୍କ ବ୍ୟକ୍ତି। ଇଂରେଜ ସରକାରଙ୍କ କୁଟନୈତିକ ଚାଲ୍ ସଫଳ ହେଲା। ତେଣୁ ପୁଣି ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ ହେବ ବୋଲି ଗାନ୍ଧିଜୀ ଭାବିଲେ। ସେ

ଇଂଲଣ୍ଡରେ ଥିବା ସମୟରେ ଲଣ୍ଡନର ପୂର୍ବାଞ୍ଚଳ ଦରିଦ୍ର ଲୋକଙ୍କ ବସ୍ତିରେ ରହୁଥିଲେ।

ଚମ୍ପାପୁର ଆଶ୍ରମକୁ ଦୃଢ କରିବାକୁ ଗୋବିନ୍ଦ ବାବୁ ବ୍ୟଗ୍ର ହୋଇ ଉଠିଲେ। ପୂର୍ବରୁ ସେ ଦାମୋଦର ସାହୁଙ୍କୁ ତାଲିମ ପାଇଁ ସାବରମତୀ ଆଶ୍ରମକୁ ପଠାଇଥିଲେ। ଶରତ ପଟ୍ଟନାୟକ ବୋଲି ଜଣେ ବ୍ୟକ୍ତି ଗୋବିନ୍ଦ ବାବୁଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇ ଗୁଜରାଟ ବିଦ୍ୟାପୀଠରେ ପଢୁଥିଲେ। କାରଣ ସେ ଆଜୀବନ ସେବକ ଭାବରେ ରହିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ। ଗୋବିନ୍ଦ ବାବୁ ପୁରୀ କଂଗ୍ରେସ ପାଇଁ କାମ କରିବାକୁ ଫେରି ଆସିଲେ।

କଂଗ୍ରେସ ଲୋକଙ୍କର, ପ୍ରଜାଙ୍କର, ରାଜ୍ୟରେ ମଣ୍ଡଳୀଙ୍କର ପ୍ରତିନିଧି ବୋଲି ଦାବୀ କରୁଥିଲା। ବ୍ରିଟିଶ ଶାସନର ଅବସାନ ଓ ପ୍ରାଦେଶିକ ଶାସନର ସ୍ୱତନ୍ତ୍ରତା ମଧ୍ୟ ଦାବୀ କରୁଥିଲା। କିନ୍ତୁ କେନ୍ଦ୍ରଶାସନ ପାଇଁ ସମୟ ଆବଶ୍ୟକ କରୁଥିଲା। ଇଂଲଣ୍ଡରେ ଥିବା ସମୟରେ ଗାନ୍ଧିଜୀ ସମସ୍ତଙ୍କୁ ବୁଝାଇ ଥିଲେ ଯେ କଂଗ୍ରେସ ସ୍ୱତନ୍ତ୍ରତା ପାଇଁ ଲଢାଇ କରୁଛି, ଇଂରେଜ ଜାତି ବିରୁଦ୍ଧରେ ନୁହେଁ। ସେ କଂଗ୍ରେସର ପ୍ରତିନିଧି। ଆମେରିକା ବାସୀଙ୍କୁ ମଧ୍ୟ ସେଇ କଥା ବୁଝାଇ ଥିଲେ।

## ସମ୍ରାଟଙ୍କ ଭୋଜିସଭା

ସମ୍ରାଟଙ୍କ ନିବାସ ବକିଂମହାମ ରାଜ୍ ପ୍ରାସାଦରେ ଭାରତର ପ୍ରତିନିଧି ମାନଙ୍କୁ ଏକ ଚା'ଭୋଜିକୁ ସମ୍ରାଟ ନିମନ୍ତ୍ରଣ କଲେ। ଏଥିରେ ସମସ୍ତେ ରାଜକୀୟ ପୋଷାକ ପରିଧାନ କରି ଯିବାକୁ ହେବ। ଗାନ୍ଧିଜୀ କିନ୍ତୁ ତାଙ୍କର ଚିରାଚରିତ ପରିଧାନ ଛାଡି ଅନ୍ୟ ପୋଷାକରେ ଯିବାକୁ ଅସମ୍ମତ ହେଲେ। ଶେଷରେ ସେ ଆଣ୍ଠୁନ ଲୁଚିବା ଧୋତି ପିନ୍ଧି ଯିବାକୁ ଅନୁମତି ପାଇଲେ। ସମ୍ରାଟ ସମସ୍ତଙ୍କ ସଙ୍ଗରେ କର ମର୍ଦ୍ଦନ କଲେ କିନ୍ତୁ ଗାନ୍ଧିଜୀଙ୍କ ସହିତ ନ କରିବାରୁ ସେ ନୀରବରେ ଠିଆ ହୋଇ ରହିଲେ ଏବଂ ତାଙ୍କ ପୁଅକୁ ବ୍ରିଟିଶ ସରକାରଙ୍କ ପ୍ରତିନିଧି ହିସାବରେ ଭାରତରେ ବାସନ୍ଦ କରାଯାଇଥିଲା ବୋଲି କହିଲେ। ଗାନ୍ଧିଜୀଙ୍କର ପୋଷାକ ବିଷୟରେ ଜଣେ କେହି ମନ୍ତବ୍ୟ ଦେବାରୁ ସମ୍ରାଟଙ୍କ ପୋଷାକ ତାଙ୍କ ପାଇଁ ଯଥେଷ୍ଟ ବୋଲି ଗାନ୍ଧିଜୀ କହିଲେ। କଂଗ୍ରେସ ସହ ସରକାରଙ୍କ ଚୁକ୍ତି ହେଲେ ମଧ୍ୟ ସରକାରଙ୍କର ଜୁଲମ ଓ ଅତ୍ୟାଚାର ବନ୍ଦ ହେଉନଥାଏ। ବର୍ଦ୍ଦୋଲିର ତଦନ୍ତ ଅଚଳ ଅବସ୍ଥାରେ ପହଞ୍ଚିଲା। ଯୁକ୍ତ ପ୍ରଦେଶ ଓ ସୀମାନ୍ତ ପ୍ରଦେଶରେ ଅବସ୍ଥା

ଶୋଚନୀୟ ହୋଇ ପଡିଲା । ସେଠି ଗଫର ଗାଁ ଧରା ହୋଇ ବନ୍ଦୀ ହେଲେ । ଯୁକ୍ତ ପ୍ରଦେଶରେ କୃଷକ ମାନଙ୍କର ଖଜଣା ରିହାତି ସରକାର କଲେ ନାହିଁ । ଫଳରେ ଖଜଣା ବନ୍ଦ ଆନ୍ଦୋଳନ ପାଇଁ କଂଗ୍ରେସ ଗାନ୍ଧିଜୀ ଓ ଜବାହର ଲାଲ୍‌ଙ୍କୁ ଅପେକ୍ଷା କରି ରହିଲା । ସରକାର ଜବାହରଙ୍କ ଗତିବିଧି ଉପରେ କଟକଣା ଜାରି କଲେ । ଜବାହର ତାହା ନ ମାନିବାରୁ ବମ୍ବେରୁ ଗିରଫ ହୋଇ ଜେଲ ଗଲେ ।

ଇତି ମଧ୍ୟରେ ଶ୍ରୀ ଦାମୋଦର ସାହୁ ସାବରମତୀରୁ ଫେରି ଚମ୍ପାପୁର ଆଶ୍ରମରେ ଯୋଗ ଦେଇଛନ୍ତି । ଶ୍ରୀ ଶରତ ପଟ୍ଟନାୟକ ମଧ୍ୟ ଗୁଜରାଟରୁ ଆସି ଆଶ୍ରମରେ ଯୋଗ ଦେଇଛନ୍ତି । ଅନ୍ନପୂର୍ଣ୍ଣା ନାମକ ଜଣେ ବିବାହିତା ମହିଳା ମଧ୍ୟ ଆଶ୍ରମରେ ଯୋଗ ଦେଇଥାନ୍ତି । ୰ ଉତ୍କଳ ମଣି ଗୋପବଂଧୁଙ୍କ ପୁରୀରେ ବିଧବା ଆଶ୍ରମ ଭାଙ୍ଗି ଯାଇଥାଏ । ଜୀବରାମ କଲ୍ୟାଜୀ କୋଠାରୀ ଜଣେ ବଡ ଶେଠ । ସେ ଦରିଦ୍ରଙ୍କ ସେବାପାଇଁ ଓଡିଶା ଆସିଲେ । ଭଦ୍ରକଠାରେ ଖଦି ଆଶ୍ରମ ସ୍ଥାପନ କରି ସସ୍ତ୍ରୀକ କାର୍ଯ୍ୟ କଲେ । ସେ ଗୋବିନ୍ଦ ବାବୁଙ୍କୁ ଚିଠି ଲେଖିଲେ ଅନ୍ନପୂର୍ଣ୍ଣାଙ୍କୁ ରଖାଇ ଆଶ୍ରମ କାର୍ଯ୍ୟ କରିବାକୁ । ଏଥିରେ ରଘୁନାଥ ପଣ୍ଡା ଗୋବିନ୍ଦ ବାବୁଙ୍କୁ ଅନ୍ନପୂର୍ଣ୍ଣା ଦ୍ୱାରା ପଲ୍ଲୀ ସଂଗଠନ କରିବାକୁ ମତ ଦେଲେ ।

ଗାନ୍ଧିଜୀ ଗୋଲ ଟେବୁଲ ବୈଠକରୁ ଡିସେମ୍ବର ମାସରେ ଫେରି କଂଗ୍ରେସକୁ ଦବାଇବା ପାଇଁ ସରକାରଙ୍କ ଅର୍ଡିନାନ୍‌ସକୁ ନିନ୍ଦା କଲେ । ବଙ୍ଗଳାରେ ଘଟିଥିବା ହିଂସାକାଣ୍ଡ ପାଇଁ ସରକାରଙ୍କୁ ନିନ୍ଦା କଲେ । ଏଥର ସଂଗ୍ରାମ ପାଇଁ ବନ୍ଧୁକର ସମ୍ମୁଖୀନ ହେବାକୁ ଲକ୍ଷ ଲକ୍ଷ ଲୋକଙ୍କୁ ଆହ୍ୱାନ ଦେଲେ । ବମ୍ବେରେ କଂଗ୍ରେସ କାର୍ଯ୍ୟକାରୀ ସମିତିରେ ପ୍ରସ୍ତାବ ଗୃହୀତ ହେଲା ଯେ ସରକାରଙ୍କ ସହିତ ସମସ୍ତ ସନ୍ଧିସର୍ତ୍ତ ରଦ୍ଦ କରିବାପାଇଁ । ତା'ପୂର୍ବରୁ ଗାନ୍ଧିଜୀ ବଡଲାଟ ଲର୍ଡ ୱେଲିଂଡନ୍‌ଙ୍କ ପାଖକୁ ଏକ ତାର ବାର୍ତ୍ତା ପଠାଇଲେ । ବଡଲାଟ ଉତ୍ତର ଦେଲେ କଂଗ୍ରେସ ଲୋକଙ୍କ ହିଂସା ଆଚରଣ ପାଇଁ ସରକାର ଜରୁରୀକାଳିନ ପରିସ୍ଥିତି ବଙ୍ଗଳା, ଯୁକ୍ତ ପ୍ରଦେଶ ଓ ସୀମାନ୍ତ ପ୍ରଦେଶରେ ଜାରି କଲେ । ସରକାର ସହଯୋଗ ନ କଲେ କଂଗ୍ରେସ ସହଯୋଗ କରିବ ଏବଂ ସେ ବଡଲାଟଙ୍କ ଠାରୁ କଂଗ୍ରେସର ହିଂସାକାଣ୍ଡ ବିଷୟରେ ଶୁଣିବାକୁ ଚାହୁଁଥିଲେ । ବଡଲାଟ ସର୍ତ୍ତ ଆରୋପ କରିବାରୁ ସେ ତାଙ୍କୁ ଦେଖା କରିବାକୁ ମନ କରି ଦେଲେ । ସେ ପୁଣି ବିନୀତ ଅନୁରୋଧ କଲେ ସେ (ବଡଲାଟ) ନିଜେ ଯାଇ କେତେକ ପ୍ରଦେଶରେ ଯେଉଁ ହିଂସା ହୋଇଛି ତାକୁ ଅନୁଧ୍ୟାନ କରିବେ ଏବଂ ଗାନ୍ଧିଜୀ ସରକାରଙ୍କୁ ସାହାଯ୍ୟ କରିବେ ।

୧୯୩୨ ମସିହା ଜାନୁୟାରୀ ୨ ତାରିଖରେ ବଡଲାଟଙ୍କ ନିକଟରୁ ପତ୍ର ଆସିଲା ଯେ ସରକାର ଯେତେବେଳେ ଶାସନ ସଂସ୍କାର କରିବାକୁ ଚାହୁଁଛନ୍ତି ସେତେବେଳେ କଂଗ୍ରେସର ସତ୍ୟାଗ୍ରହ ଧମକ ମନୋବୃତ୍ତି ଅତ୍ୟନ୍ତ ଶୋଚନୀୟ। ତେଣୁ ଏହି ଧମକକୁ ସରକାର ପୂରା ମୁକାବିଲା କରିବାକୁ ପ୍ରସ୍ତୁତ ଅଛନ୍ତି। ସତ୍ୟାଗ୍ରହ ହେଲେ ଗାନ୍ଧିଜୀ ଏବଂ କଂଗ୍ରେସ ଉଭୟେ ଦାୟୀ ରହିବେ। ବଡଲାଟଙ୍କ ଏଭଳି ଉତ୍ତରରେ ଗାନ୍ଧିଜୀ ଦୁଃଖ ପ୍ରକାଶ କଲେ ଏବଂ କହିଲେ ଯେ ଚୁକ୍ତିପତ୍ର ସ୍ୱାକ୍ଷରିତ ସମୟ ଏବଂ ଲଣ୍ଡନ ଯାତ୍ରା ପୂର୍ବରୁ ସତ୍ୟାଗ୍ରହକୁ ସୀମିତ ଏବଂ ବନ୍ଦ ରଖା ଯାଇଥିଲା ଏବଂ ସେ ସମୟରେ ସରକାର ଆପୋଷ ଆଲୋଚନା ବନ୍ଦ ରଖି ନଥିଲେ।

## ସଂଗ୍ରାମ ଆରମ୍ଭ

୧୯୩୨ ଜାନୁୟାରୀ ୪ ତାରିଖ ସକାଳେ ଗାନ୍ଧିଜୀ ଗିରଫ ହୋଇଗଲେ। ଗିରଫ ହେବା ଆଗରୁ ଜାଣି ସେ ବହୁତ କାମ ସାରି ଦେଇଥିଲେ ଏବଂ ରାତିସାରା ଶୋଇ ପାରି ନଥିଲେ। ଦେଶବାସୀଙ୍କୁ ସତ୍ୟ ଓ ଅହିଂସା ପଥରୁ ବିଚ୍ୟୁତ ନ ହେବାକୁ ଏବଂ ସ୍ୱରାଜ ଲାଭ ପାଇଁ ଧନ ଜୀବନ ବଳି ଦେବାକୁ ଉପଦେଶ ଦେଇଗଲେ।

ଗାନ୍ଧିଜୀ ଗିରଫ ହେବା ଖବର ବିଜୁଳି ବେଗରେ ଦେଶସାରା ବ୍ୟାପୀ ଗଲା। ସରକାର ସଂଗେ ୨ ଅର୍ଡ଼ିନାନ୍‌ସ ଜାରି କରି ଦେଲେ। କଂଗ୍ରେସକୁ ଏକ ବେଆଇନ ଅନୁଷ୍ଠାନ ରୂପେ ଘୋଷଣା କରାଗଲା। ନେତୃ ସ୍ଥାନୀୟ ବ୍ୟକ୍ତିମାନେ ଧରା ହୋଇ ଜେଲ ଗଲେ। ଦେଶରେ ଏକ ଆତଙ୍କରାଜ ସୃଷ୍ଟି ହେଲା। କଂଗ୍ରେସ ବର୍ତ୍ତମାନ ଏକ ବିଦ୍ରୋହୀ ଅନୁଷ୍ଠାନ ରୂପେ ବିବେଚିତ ହେଲା। କଂଗ୍ରେସ କର୍ମୀମାନେ ଆଇନ କାନୁନ୍ ଅବଜ୍ଞା କରି "ଯୁଦ୍ଧଂ ଦେହୀ" ଆହ୍ୱାନରେ ସତ୍ୟାଗ୍ରହ ସଂଗ୍ରାମ ଆରମ୍ଭ କରି ଦେଲେ। ତେଣୁ ପୁରୀ କଂଗ୍ରେସ ଅଧଇବେଶନ ପାଇଁ ସମସ୍ତ ଉଦ୍ୟମ ପଣ୍ଡ ହୋଇଗଲା। ଏହି ଅଧିବେଶନ ହୋଇ ଥିଲେ ଓଡିଶା ଜନସାଧାରଣଙ୍କର ଆଖି ଖୋଲି ଯାଇଥାନ୍ତା।

ଗୋବିନ୍ଦ ବାବୁ ପୁରୀ ଛାଡି ଚମ୍ପାପୁର ଆଶ୍ରମକୁ ଫେରି ଆସିଲେ। ଦାମୋଦର ସାହୁ ଖଦଡ କାମ ବୁଝୁଥାନ୍ତି। କୃପାସିନ୍ଧୁ ପଟ୍ଟନାୟକ ହିସାବ ରକ୍ଷକ ଭାବରେ ନିଯୁକ୍ତ ଥାନ୍ତି। ଶରତ ପଟ୍ଟନାୟକଙ୍କ ଉପରେ ଆଶ୍ରମ ପରିଚାଳନା ଭାର ଥିଲା।

ଆଶ୍ରମର ଆଉ ଜଣେ କର୍ମୀ ବିଶ୍ୱକେତନ ଡାକୁଆ ଖଦଡ ରଙ୍ଗେଇବା ଓ ଛପାଇବା କାମ ଶିଖୁଥିଲେ। ତାଙ୍କ ଘର ଦଶପଲ୍ଲା ରାଜ୍ୟରେ। ସେ ପୁରୀ ଅଧିବେଶନ ପାଇଁ ସେବାଦଳ ଟ୍ରେନିଂ କ୍ୟାମ୍ପକୁ ଯାଇଥିଲେ। ସେବାଦଳ କ୍ୟାମ୍ପ ବେଆଇନ ଘୋଷିତ ହୋଇତିବାରୁ ସେ ଧରା ହୋଇ ଜେଲ ଗଲେ। ତାଙ୍କ ଗିରଫ ପରେ ଗୋବିନ୍ଦ ବାବୁ କଟକ ଆସିଲେ।

ସତ୍ୟାଗ୍ରହ ଆନ୍ଦୋଳନର ଜାନୁୟାରୀ ୨୬ ଦିନ ବିଭିନ୍ନ ସ୍ଥାନରେ ଶପଥ ପାଠ ଉତ୍ସବ ସଂଧ୍ୟା ୫ଟାରେ କରିବା ପାଇଁ ଦିନଧାର୍ଯ୍ୟ ହୋଇଥିଲା। ସେହି ଅନୁସାରେ ରାଣୀହାଟ ଛକରେ ଶପଥ ପାଠ ଉତ୍ସବ କରାଇବା ଗୋବିନ୍ଦ ବାବୁଙ୍କ ଉପରେ ନ୍ୟସ୍ତ ଥିଲା। ଯେ ଯେଉଁଠି ଶପଥ ପାଠ ଉତ୍ସବ କଲେ ଗିରଫ ହୋଇଗଲେ। ମଙ୍ଗଳାବାଗ ପୋଲିସ ଗୋବିନ୍ଦ ବାବୁଙ୍କୁ ରାଣୀ ହାଟ ସ୍ଥାନରୁ ଚଲାଇ ଚଲାଇ ଥାନା ପର୍ଯ୍ୟନ୍ତ ଆଣିଲା ଏବଂ ସେ ବାଟଯାକ ଗୋଡାଉଥିବା ଲୋକଙ୍କୁ ଗାନ୍ଧିଜୀଙ୍କ ବାଣୀ ଶୁଣାଉଥାନ୍ତି। ବିଚାର ପରେ ଗୋବିନ୍ଦ ବାବୁଙ୍କୁ ଅଠର ମାସ ଜେଲ ହେଲା। ଜେଲରେ ଥାଇ ସେ ଅନ୍ନପୂର୍ଣ୍ଣା କଲିକତାର ଅବଳା ଆଶ୍ରମରୁ ରଘୁନାଥ ପଣ୍ଡା ଆଣିବା ଖବର ପାଇଲେ। ସେଇ ଯୋଗେ ହଜାରୀବାଗ ଜେଲକୁ ଯିବା ବାଟରେ ଖେରୀ ଷ୍ଟେସନରେ ଅନ୍ନପୂର୍ଣ୍ଣାଙ୍କୁ ଗୋବିନ୍ଦ ବାବୁଙ୍କ ସହିତ ଭେଟ କରାଇ ଦିଆଗଲା। ସେ ଅନ୍ନପୂର୍ଣ୍ଣାଙ୍କୁ ଦରିଦ୍ରମାନଙ୍କର ସେବା କରିବା ପାଇଁ ଉପଦେଶ ଦେଇ ଗଲେ। ତାଙ୍କୁ ହଜାରୀବାଗ ଜେଲରୁ ପାଟଣା କାମ୍ପ ଜେଲକୁ ବଦଳି କରାଗଲା। ପୋଲିସ ବିରୁଦ୍ଧରେ ଅଭିଯୋଗ ଆଣିବାରୁ ତାଙ୍କୁ 'ଖ' ଶ୍ରେଣୀରୁ 'ଗ' ଶ୍ରେଣୀ ବନ୍ଦୀ ଭାବେ ରଖାଗଲା। ଏହା ୧୯୩୨ ଫେବୃୟାରୀ ମାସର ଘଟଣା।

## ପାଟଣା କାମ୍ପ ଜେଲ

୧୯୩୦ର ଲବଣ ସତ୍ୟାଗ୍ରହ ଯୋଗୁଁ ପାଟଣାରେ କାମ୍ପ ଜେଲ ସୃଷ୍ଟି ହୋଇଥିଲା। ଉଚ୍ଚ ତାର ବାଡ ଦେଇ ଟିଣ ଦ୍ୱାରା ବଡ ବଡ ବଖରା ସବୁ କରାଯାଇଥିଲା। ପ୍ରତି ବଖରାରେ ଅଶୀରୁ ନବେ ପର୍ଯ୍ୟନ୍ତ ବନ୍ଦୀ ରହୁଥିଲେ। ଦିନରାତି ବିଜୁଳି ଜଳୁଥିବା ଓ ସଶସ୍ତ୍ର ପୋଲିସ ଜଗି ରହୁଥିଲେ। ଓଡିଶାରେ ହଜାରେ ବାରଶହ ପର୍ଯ୍ୟନ୍ତ ବନ୍ଦୀ ଥିଲେ। ଜେଲ ପୋଷାକ ପିନ୍ଧିବା ଓ 'ଗ' ଶ୍ରେଣୀର ବନ୍ଦୀକୁ ନିକୃଷ୍ଟମାନର ଖାଦ୍ୟ ଦିଆଯାଉଥିଲା।

## ଜେଲ ପରିଚାଳନା କମିଟି

ରାଜନୈତିକ ବନ୍ଦୀମାନେ ସ୍ୱାୟତ୍ତଶାସନ ଅଧିକାର ପାଇଥିଲେ। ପରିଚାଳନା କମିଟିର କାର୍ଯ୍ୟନିର୍ବାହୀ କମିଟି ଥିଲା। ସାଧାରଣ କମିଟିର ସଭାପତି ମାନେ କାର୍ଯ୍ୟନିର୍ବାହୀ ସମିତିର ସଭ୍ୟ ହୁଅନ୍ତି। ଏହି କମିଟି ଗୁଡିକ ହେଉଛି ଡାକ୍ତରଖାନା କମିଟି, ପାକଶାଳା କମିଟି, ଶିକ୍ଷା, ସ୍ୱାସ୍ଥ୍ୟ, ସାଂସ୍କୃତିକ କମିଟି. ଆଲୋଚନା କମିଟି ଓ ନାଟ୍ୟଶାଳା କମିଟି ଇତ୍ୟାଦି। ଗୋବିନ୍ଦ ବାବୁ ସାଧାରଣ କମିଟିର ସଭ୍ୟଥିଲେ ଏବଂ ଡାକ୍ତରଖାନା କମିଟିର ସଭାପତି ଥିଲେ। ଓଡିଶା ରାଜ ବନ୍ଦିମାନଙ୍କର ଗୋଟିଏ ସ୍ୱତନ୍ତ୍ର କମିଟି ଥିଲା। ରାଜ ବନ୍ଦୀମାନଙ୍କର ଶୃଙ୍ଖଳା ଦେଖିବା ପାଇଁ ପଣ୍ଡିତ ପ୍ରାଣକୃଷ୍ଣ ପଡିହାରୀ, ମଦନ ପଟ୍ଟନାୟକ, କରୁଣାକର ପାଣିଗ୍ରାହୀ, ଗୋକୁଳା ନନ୍ଦ ମହାନ୍ତି, ସୁଧୀର ଚନ୍ଦ୍ରଘୋଷ, ନୃସିଂହ ସାମନ୍ତ ସିଂହାର ପ୍ରଭୃତି ଥିଲେ। ଏଠାରେ ସେବା ଦଳ ଟ୍ରେନିଂ କାମ୍ପ କରି ସେବା ଟ୍ରେନିଂ ଦିଆଯାଉଥିଲା। ନିରକ୍ଷତା ଦୂରୀକରଣ, ରାଜନୈତିକ ଜ୍ଞାନ ପାଇଁ ଆଲୋଚନା ସଭା ଅନୁଷ୍ଠିତ ହେଉଥିଲା। ଗୋବିନ୍ଦ ବାବୁ କଂଗ୍ରେସର ଇତିହାସ ଶୁଣାଇବା ଦାୟିତ୍ୱରେ ଥିଲେ ଓ ନୃସିଂହ ଚରଣ ସାମନ୍ତ ସିଂହାର ଗୋଟିଏ ସେବା ଦଳ କାମ୍ପର ଅଧ୍ୟକ୍ଷ ଥିଲେ।

୧୯୩୨ ମସିହାର ଅପ୍ରିଲର ଶେଷ ବା ମେ ମାସ ପ୍ରାରମ୍ଭରେ ବିହାରୀ ରାଜ ବନ୍ଦୀ ଓ ଜେଲ କର୍ତ୍ତୃପକ୍ଷଙ୍କ ସହ ଝଗଡା ହୋଇଥିଲା। ପରିସ୍ଥିତି ଏପରି ହେଲା ଯେ ଗୁଳିଚାଳନା ପର୍ଯ୍ୟନ୍ତ କଥା ଗଲା। ଜେଲ କର୍ତ୍ତୃପକ୍ଷ ଓ ବନ୍ଦୀମାନଙ୍କର କଥା ଗୋବିନ୍ଦ ବାବୁ ସରଳ ଭାବରେ ସମାଧାନ କରିଥିବାରୁ ଜେଲରେ ତାଙ୍କର ଖାତିର ବଢିଲା। ଜେଲରେ ଓଡିଆ ରାଜ ବନ୍ଦୀମାନେ ଅନେକ ପରିବର୍ତ୍ତନ ଆଣିଥିଲେ। ଶାନ୍ତି ରକ୍ଷା, ପଢାଶୁଣା, ରୋଷେଇ, ଖାଦ୍ୟପେୟ, ଖେଳ, ସେବା, ନାଟକ ସବୁଥିରେ ଓଡିଆ ବନ୍ଦୀମାନଙ୍କର ସୁଖ୍ୟାତି ଥିଲା। ଜେଲରେ ୧୯୨୨/୨୩ରେ ଲୁଣ, ଲଙ୍କା ମରିଚ ଉପରେ କଠୋର କଟକଣା ଥିଲା। ଓଡିଶାରେ କୋଣାର୍କ ନାଟକ ଅଭିନୟ ବଙ୍ଗାଳୀ, ବିହାରୀ ବନ୍ଦୀଙ୍କୁ ଅଭିଭୂତ କରିଥିଲା। ସେହିପରି ଅଷ୍ଟପ୍ରହୀ କୀର୍ତ୍ତନ ମଧ୍ୟ ସମସ୍ତଙ୍କୁ ମୁଗ୍ଧ କରିଥିଲା। ଗୋବିନ୍ଦ ବାବୁ ଜେଲରେ ଥିବା ସମୟରେ ଶ୍ରୀ ବିବେକାନନ୍ଦଝା ଏବଂ ଶ୍ରୀ ଶଶୀଭୂଷଣ ରାଏଙ୍କ ସହିତ ଚେସ୍ ଖେଳୁଥିଲେ। ଗୀତ ମୁଖସ୍ଥ ପ୍ରତିଯୋଗିତା ଓ କବିତା ଲେଖି ପ୍ରଶଂସା ପାଇଥିଲେ। ଗୀତ ପ୍ରତିଦ୍ୱନ୍ଦିତାରେ ଖଣ୍ଡିଏ ଗୀତା ପୁସ୍ତକ ପୁରସ୍କାର ପାଇଥିଲେ।

## ଜେଲରୁ ହରିଜନ ସେବା

ଗୋଲ ଟେବୁଲ ବୈଠକରେ ଡକ୍ଟର ଆମ୍ବେଦକର ନିଜ ଜାତି (ତଫସିଲଭୁକ୍ତ ଜାତି) ପାଇଁ ବିଲାତର ପ୍ରଧାନମନ୍ତ୍ରୀ ରାମ୍‌ସେ ମ୍ୟାକ ଡୋଲାଣ୍ଡଙ୍କ ନିକଟରେ ଶାସନ ଖସଡାରେ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ଦାବୀ କଲେ। ମହାତ୍ମା ଗାନ୍ଧିଙ୍କ ପ୍ରତିବାଦ ସତ୍ତ୍ୱେ ପ୍ରଧାନମନ୍ତ୍ରୀ ତାହା ଗ୍ରହଣ କରି ନେଲେ। ଫଳରେ ଉଚ୍ଚ ହିନ୍ଦୁ ଜାତି ଓ ତଫସିଲଭୁକ୍ତ ଉପଜାତି ସ୍ୱତନ୍ତ୍ର ଭାବରେ ଭୋଟ ଦେବେ ଓ ଉଭୟଙ୍କ ଭିତରେ ସଂପର୍କ ରହିବ ନାହିଁ। ବିଭିନ୍ନ ରାଜନୈତିକ ଦଳ ତାଙ୍କୁ ଆପଣେଇବା ପାଇଁ ଚେଷ୍ଟା କରିବେ। ଏହା ବିରୁଦ୍ଧରେ ଗାନ୍ଧିଜୀ ୟାରବାଡା ଜେଲରେ ଆମରଣ ଅନଶନ କଲେ। ଏହି ଅନଶନ ସାରା ଦେଶକୁ ଦୋହଲାଇ ଦେଲା। ସମଗ୍ର ଦେଶରୁ ଓ ବିଦେଶରୁ ଏହି ବ୍ୟବସ୍ଥା ବିରୁଦ୍ଧରେ ଆଇନ ରଦ୍ଦ କରିବାକୁ ବିଲାତ ପାର୍ଲିମେଣ୍ଟକୁ ଅନୁରୋଧ କରାଗଲା। ପାଟଣା କାମ୍ପ ଜେଲରେ ବନ୍ଦୀମାନେ ମେହେନ୍ତରଙ୍କୁ ସାବୁନ ଲଗାଇ ଗାଧୋଇ ଦେଇ, ନୂଆ ଲୁଗା ପିନ୍ଧାଇ ଓ ଫୁଲମାଳ ପିନ୍ଧାଇ ପୂଜାଅର୍ଚ୍ଚନା କଲେ ଓ ନିଜ ହାତରେ ପାଇଖାନା ସଫା କଲେ।

ବିଲାତର ପ୍ରଧାନମନ୍ତ୍ରୀ ଅତ୍ୟନ୍ତ ବିଚଳିତ ହୋଇ ଉଠିଲେ ଏବଂ ଭାରତର ସବୁ ଶ୍ରେଣୀର ବିଶିଷ୍ଟ ବ୍ୟକ୍ତିଗଣ ଯେଉଁ ସର୍ତ୍ତ ଦେଲେ ସେ ଗ୍ରହଣ କରି ନେଲେ। ସେମାନଙ୍କ ପାଇଁ (ତଫସିଲଭୁକ୍ତ ଜାତି) ସଂରକ୍ଷଣ ବ୍ୟବସ୍ଥା ହେଲା, ତା'ଛଡା ସାଧାରଣ ବର୍ଗର ପାର୍ଥୀଙ୍କ ସ୍ଥାନରେ ମଧ୍ୟ ଭୋଟ ଲଢିବାର ବ୍ୟବସ୍ଥା ରହିଲା। ଫଳରେ ହିନ୍ଦୁଧର୍ମାବଲମ୍ବୀ ତଫସିଲଭୁକ୍ତ ଜାତିର ଲୋକେ ହିନ୍ଦୁ ସମାଜରେ ରହିଲେ। ଦେଶରେ ସ୍ୱଭାବିକ ଅବସ୍ଥା ଫେରି ଆସିଲା।

## ଚମ୍ପାପୁର ଆଶ୍ରମ ଓ ଶରତ ପଟ୍ଟନାୟକ

ଦେଶର ସ୍ୱଭାବିକ ବ୍ୟବସ୍ଥା ଫେରିବାରୁ ଗୋବିନ୍ଦ ବାବୁ ଚମ୍ପାପୁର ଆଶ୍ରମ କଥା ଚିନ୍ତା କଲେ। ଯାହାଙ୍କ ଉପରେ ଆଶ୍ରମ ଭାର ଦେଇ ଆସିଥିଲେ (ଶରତ ପଟ୍ଟନାୟକ) ତାଙ୍କର ବ୍ୟବହାରିକ ଜ୍ଞାନର ଅଭାବ ଥିଲା। ଏହି ଆଶ୍ରମର ଗଠନ ପାଇଁ ପ୍ରଥମେ ଗୋବିନ୍ଦ ବାବୁ ଉତ୍କଳମଣିଙ୍କ ଠାରୁ ଟ୫୦ ଦାନ ପାଇଥିଲେ। ଆଶ୍ରମ କାର୍ଯ୍ୟ ପାଇଁ ଗୋବିନ୍ଦ ବାବୁ ବହୁତ ଲୋକଙ୍କର ଚକ୍ଷୁଶୂଳ ହୋଇଥିଲେ।

ଶରତ ପଟ୍ଟନାୟକ ଓ ଅନ୍ନପୂର୍ଣ୍ଣାଙ୍କୁ ନେଇ ଅନେକ ଗୁଜବ ସୃଷ୍ଟି ହୋଇଥିଲା ଯାହାକି 'ଦେଶକଥା' ବୋଲି ଏକ ପତ୍ରିକାରେ ବାହାରିଥିଲା। ଏଣୁ ଏହି ଗୁଜବର

ସମ୍ମୁଖୀନ ହେବାପାଇଁ ସେ ଅନ୍ନପୂର୍ଣ୍ଣାଙ୍କୁ ବିବାହ କରିବା ପାଇଁ ସ୍ଥିର କଲେ ଏବଂ ଗୋବିନ୍ଦ ବାବୁଙ୍କୁ ଜଣାଇ ଦେଲେ। ଗୋବିନ୍ଦ ବାବୁ ଜେଲରୁ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ବା ଜୀବରାମ ଭାଇଙ୍କ ସହିତ ପରାମର୍ଶ କରି ଯାହା କରିବେ ବୋଲି ପରାମର୍ଶ ଦେଲେ। ଶରତ ପଟ୍ଟନାୟକ କିଛି ଟଙ୍କା ନେଇ ଅନ୍ନପୂର୍ଣ୍ଣା ସହିତ ଆଶ୍ରମ ତ୍ୟାଗ କଲେ।

କାମ୍ପ ଜେଲରେ ଆହୁରି ୬ ମାସ କାରାବାସ ବାକି ଥିବା ସମୟରେ ଶରତଙ୍କ ଆଶ୍ରମ ତ୍ୟାଗ କଥା ଗୋବିନ୍ଦ ବାବୁ ଶୁଣି ଦୁଃଖର ସୀମା ରହିଲା ନାହିଁ। ଆଶ୍ରମର ଚିନ୍ତାମଣି ଭୂୟାଁ ଜଣେ କର୍ମୀ ପନ୍ଦର ଶହ ଟଙ୍କା ଆତ୍ମସାତ୍ କଲେ। ଖଦଡ ବିକ୍ରୀ କରିବା ପାଇଁ ଶରତ ପଟ୍ଟନାୟକ ଯାହାଙ୍କୁ ଦେଇଥିଲେ ସେମାନେ ଆଉ ଆସିଲେ ନାହିଁ।

ଜେଲରୁ ଗୋବିନ୍ଦ ବାବୁ ସାକ୍ଷୀଗୋପାଳ ସେବା-ସଦନର କର୍ମୀ ଶ୍ରୀ ସତ୍ୟବାଦୀ ନନ୍ଦଙ୍କୁ ଆଶ୍ରମ ଦାୟିତ୍ୱ ନେବାପାଇଁ ଅନୁରୋଧ କରି ଖଣ୍ଡେ ପତ୍ର ଲେଖିଲେ। ସେ ଅନୁରୋଧ ରକ୍ଷା କରି ଦାୟିତ୍ୱ ନେଲେ ଓ ଶ୍ରୀ ଦାମୋଦର ସାହୁ ଆଶ୍ରମର ଖଦି ବିଭାଗକୁ ମୂଳ ପୋଛରୁ ରକ୍ଷା କଲେ।

୧୯୩୩ ମସିହାରେ ଗୋବିନ୍ଦ ବାବୁ ଜେଲରୁ ବାହାରିଲେ। ଜେଲ ସୁପରିଟେଣ୍ଡେଣ୍ଟଙ୍କ ସହିତ ତାଙ୍କର ପଟୁ ନଥିଲା। ବିନୋଦା ନନ୍ଦ ଝା ଓ ଶଶୀଭୂଷଣ ରାଏ ହଜାରୀବାଗ ଜେଲକୁ ବଦଳି ହୋଇଗଲେ। ମାତ୍ର ସୁଧୀର ଘୋଷ ଓ ଗୋବିନ୍ଦ ବାବୁଙ୍କ ଉପରକୁ ରାଗିଯାଇ ସୁପରିଟେଣ୍ଡେଣ୍ଟ ମାରିବାକୁ ବସିବାରୁ ଗୋବିନ୍ଦ ବାବୁ ରାଗିଯାଇ କହିଲେ "Please don't touch me"। ତା'ପରେ ୨ ଜଣଙ୍କୁ ପାଟଣା ଜେଲକୁ ପଠାଇ ଦେଲେ। ତା'ର କେତେ ମାସ ପରେ ଗୋବିନ୍ଦ ବାବୁ ଖଲାସ୍ ହେଲେ। ଗୋବିନ୍ଦ ବାବୁଙ୍କ ସହିତ ଡାକ୍ତର ମହମ୍ମଦ, କ୍ରିପାଲିନୀ ଓ ପୂଜ୍ୟ ଶ୍ରୀ ରାଜେନ୍ଦ୍ର ପ୍ରସାଦ ମଧ୍ୟ ସହ ବନ୍ଦୀ ଥିଲେ। ପରେ ଏ ୨ ଜଣ ହଜାରୀବାଗ ଜେଲକୁ ଚାଲାଣ ହେଲେ। ଗୋବିନ୍ଦ ବାବୁ ଓ ଜଣେ ବଙ୍ଗାଳୀ ଭଦ୍ର ବ୍ୟକ୍ତି ଦରଭଙ୍ଗା ଜେଲକୁ ଗଲେ। ସେତେବେଳକୁ ଆଉ ମାତ୍ର ୧୫ ଦିନ କାରାବାସ ବାକି ଥାଏ। ଦରଭଙ୍ଗା ଜେଲରୁ ବାହାରି ଚମ୍ପାପୁର ଗାନ୍ଧି ସେବାଶ୍ରମରେ ଉପସ୍ଥିତ ହେଲେ ୧୯୩୩ ମସିହା ଜୁଲାଇ ମାସରେ।

ବଙ୍ଗଳାର ଅଭୟ ଆଶ୍ରମର ଅନୁକରଣରେ ଚମ୍ପାପୁର ଆଶ୍ରମ ଗଢିବାକୁ ଗୋବିନ୍ଦ ବାବୁଙ୍କ ଇଚ୍ଛା ଥିଲା। ଡାକ୍ତର ସୁରେଶ ଚନ୍ଦ୍ର ବାନାର୍ଜୀ ଏହି ଅଭୟ ଶ୍ରମର

ପ୍ରତିଷ୍ଠାତା । ଏହାର ପ୍ରଧାନ କର୍ମକର୍ତ୍ତା ଯଥା ଶ୍ରୀ ସୁରେଶ ଚନ୍ଦ୍ର ବାନାର୍ଜୀ, ଡାକ୍ତର ପ୍ରଫୁଲ୍ଲ ଘୋଷ ଓ ଶ୍ରୀ ସୁବାସ ଚନ୍ଦ୍ର ବୋଷ ପ୍ରଭୃତି ଏକାଠି ରହି ଅଧ୍ୟୟନ କରୁଥିଲେ ଓ ଦେଶର ଭବିଷ୍ୟତ ବିଷୟରେ ଚିନ୍ତା କରୁଥିଲେ । କେତେକ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ ଦେଇ ଡାକ୍ତର, ଓକିଲ, ଡେପୁଟି ଓ ଶିକ୍ଷକ କରାଇଛନ୍ତି । ମାତ୍ର ଆଶ୍ରମ କାର୍ଯ୍ୟରେ ସାହାଯ୍ୟ କରିବା ଦୂରର କଥା ବରଂ ଈର୍ଷ୍ୟାନ୍ୱିତ ହୋଇଛନ୍ତି ଓ କଠୋର ସମାଲୋଚନା କରିଛନ୍ତି । ଯେଉଁମାନଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ସେମାନଙ୍କ ଭିତରୁ ୨ ଜଣ ହେଉଛନ୍ତି ଶ୍ରୀ ରାମଚନ୍ଦ୍ର ମିଶ୍ର ଓକିଲାତି କରନ୍ତି ଓ ନାଟକ ଲେଖନ୍ତି । ଅନ୍ୟ ଜଣେ ହରିଦାସପୁର (କଟକ ଜିଲ୍ଲାର) ନିକଟବର୍ତ୍ତୀ ନାନପୁର ଗ୍ରାମର ଶ୍ରୀନିବାସ କର । ପୋଷ୍ୟ ପୁତ୍ର ହେବା ପରେ ତାଙ୍କର କର ପରିବର୍ତ୍ତେ ମିଶ୍ର ହୋଇ ତାଙ୍କରି ଗୋତ୍ରରେ ବବାହ କରାଇ ଥିଲେ ।

## ଜନସେବା

ଲୋକଙ୍କର ଆସ୍ଥା ଓ ବିଶ୍ୱାସ ବଢାଇବା ପାଇଁ ହୋମିଓପାଥି ପଢି ନିଜେ ଡାକ୍ତର ବନିଲେ । ହଇଜା, ବସନ୍ତ ସମୟରେ ଅନ୍ଧାର ରାତିରେ ଲଣ୍ଠନ ଧରି ଗାଁକୁ ଯାଇ ରୋଗୀ ସେବା କରିଛନ୍ତି । ଟାଇଫଏଡ୍ ଓ ନିମୋନିଆ ରୋଗୀକୁ ମଧ୍ୟ ଆରୋଗ୍ୟ କରିଛନ୍ତି । ତାଙ୍କ କଥା ଅନୁସାରେ ନ ଚଳିଲେ ଲୋକଙ୍କୁ ମାଡମାରିବା ପର୍ଯ୍ୟନ୍ତ ଯାଇଛନ୍ତି । ଅନ୍ଧବିଶ୍ୱାସ ଦୂର କରିବା ପାଇଁ କାଳିସୀକୁ ମାଡ ଦେବା ପର୍ଯ୍ୟନ୍ତ ଯାଇଛନ୍ତି । ପୋଲିସ ଅତ୍ୟାଚାର, ଜମିଦାର ଧନୀ ମହାଜନଙ୍କ ଅତ୍ୟାଚାର ବିରୁଦ୍ଧରେ ଲୋକଙ୍କ ମନରେ ବଳ ଓ ସାହାସ ସଂଚାର କରିଛନ୍ତି ।

୧୯୩୩ ମସିହାର ଜୁଲାଇ ମାସର ବନ୍ୟାରେ କଟକ, ପୁରୀ ଜିଲ୍ଲା ବିଶେଷ କ୍ଷତିଗ୍ରସ୍ତ ହୋଇଥିଲା । ବନ୍ୟାଞ୍ଚଳରେ ସାହାଯ୍ୟ କେନ୍ଦ୍ରର କର୍ମୀ ମାନଙ୍କୁ ରିଲିଫ୍ ବଣ୍ଟନରେ ସାହାଯ୍ୟ କରିଛନ୍ତି ।

ଗୋବିନ୍ଦ ବାବୁ ଅର୍ଥ ସଂଗ୍ରହ ପାଇଁ ବମ୍ବେ ଗଲେ । ପୁନାରେ ଗାନ୍ଧିଜୀଙ୍କୁ ସାକ୍ଷାତ କଲେ । ଯ୍ୟରବାଡା ଜେଲରେ ୨୧ ଦିନ ଅନଶନ କରି ଗାନ୍ଧିଜୀ ବହୁତ ଦୁର୍ବଳ ହୋଇ ପଡିବାରୁ ଇଂରେଜ ସରକାର ତାଙ୍କୁ ଖଲାସ କରି ଦେଲେ । ସେଠାରୁ ଆସି ବମ୍ବେର ପର୍ଣ୍ଣକୁଟୀର ନାମରେ ଏକ ବିରାଟ ମାର୍ବଲ ପଥର ଘରେ ରହୁଥିଲେ । ସେଠାରେ ସେ ହରିଜନ ସମସ୍ୟା ନେଇ ଚିନ୍ତିତ ଥିଲେ । ପୁରୀ ମନ୍ଦିରରେ ହରିଜନ ପ୍ରବେଶ କଥା ପଡିଲା । ଗୋବିନ୍ଦ ବାବୁ ନୀଳକଣ୍ଠ ଦାସଙ୍କ ନାମ ସୂଚନା ଦେଲେ ଏ ବିଷୟରେ ସାହାଯ୍ୟ କରିବା ପାଇଁ ଗାନ୍ଧିଜୀ ଗୋବିନ୍ଦ

ବାବୁଙ୍କୁ ନୀଳକଣ୍ଠଙ୍କୁ ଶୀଘ୍ର ତାର କରି ଡକାଇବେ। ସେ ଆସି ତାଙ୍କୁ ବନ୍ୟା ପରିସ୍ଥିତି ବୁଝାଇବେ। ଗୋବିନ୍ଦ ବାବୁଙ୍କ ତାର ପାଇ ନୀଳକଣ୍ଠ ବମ୍ବେରେ ଗାନ୍ଧିଜୀଙ୍କ ସହିତ ସାକ୍ଷାତ କଲେ।

ଗାନ୍ଧିଜୀଙ୍କୁ କେହି ଜଣେ ନୀଳକଣ୍ଠ ଦାସ ଅର୍ଥ ଆତ୍ମସାତ୍ କରିବା ଅଭିଯୋଗ କରିଏକ ଚିଠି ଲେଖିଥିଲେ। ଗାନ୍ଧିଜୀ ଏ ପତ୍ର ଉଭୟଙ୍କୁ ଦେଖାଇଲେ। ଗୋବିନ୍ଦ ବାବୁ ନୀଳକଣ୍ଠଙ୍କ ସପକ୍ଷରେ କହିଲେ। ତେଣୁ ଗାନ୍ଧିଜୀ ସେ ଚିଠିଟିକୁ ଚିରି ଅଳିଆ ଗଦାକୁ ଫିଙ୍ଗି ଦେଲେ। ନୀଳକଣ୍ଠଙ୍କ ଅତ୍ୟନ୍ତ ମନ କଷ୍ଟ ହୋଇଥିବାରୁ ସେ ଓଡିଶାର ବନ୍ୟା ବିଷୟରେ ସଠିକ୍ ତଥ୍ୟ ଦେଇ ପାରିଲେ ନାହିଁ।

ବମ୍ବେ, ଅହମଦାବାଦରୁ ଚମ୍ପାପୁର ଆଶ୍ରମ ପାଇଁ ଚାରି ହଜାର ଟଙ୍କା ସଂଗ୍ରହ କରି ଫେରିଲେ। ଚମ୍ପାପୁର ଠାରୁ ୧୦ ମାଇଲ ଦୂରରେ କଳକଳା ଠାରେ ପଚିଶ ଏକର ଜମି ଉପରେ ଏକ ଆଶ୍ରମ ପ୍ରତିଷ୍ଠା କଲେ। ଉଦ୍ଦେଶ୍ୟ ଉଚ୍ଚ ଶିକ୍ଷିତ ପରିବର୍ତ୍ତେ ଅର୍ଦ୍ଧ ଶିକ୍ଷିତ ଯୁବକମାନଙ୍କୁ ନେଇ ବିଭିନ୍ନ ତାଲିମ ଦେଇ ଯଥା ସୂତାକଟା, ଲୁଗାବୁଣା ଓ ବଢେଇ କାମ କରି ପଲ୍ଲି ସଂଗଠନ କରିବେ। ଜଙ୍ଗଲ ସଫା କରି ଗାଇ, ବଳଦ କିଣି ଚାଷ କାମ ଆରମ୍ଭ ହେଲା। ଚମ୍ପାପୁରରେ ଖଦି ଓ ସେବା କାମ ଚାଲିଥାଏ। ସେଠାରେ ଦାମୋଦର ସାହୁ, ରତ୍ନାକର ମିଶ୍ର ଓ ପୂର୍ଣ୍ଣ ଚନ୍ଦ୍ର ମହାନ୍ତି କର୍ମୀ ମାନେ କାମ କରୁଥାନ୍ତି।

ମହାତ୍ମା ଗାନ୍ଧି ହରିଜନ ପ୍ରଚାର କାର୍ଯ୍ୟରେ ଭାରତ ଭ୍ରମଣ ଆରମ୍ଭ କଲେ। ତାମିଲନାଡୁ ଓ ଆନ୍ଧ୍ରପ୍ରଦେଶ ଭ୍ରମଣ କରି ୧୯୩୪ ମସିହାରେ ଓଡିଶାରେ ପ୍ରବେଶ କଲେ। ପୁରୀଠାରୁ ହରିଜନ ପଦଯାତ୍ରା ଆରମ୍ଭ ହେଲା। ୧୯୩୪ ମସିହାରେ ବିହାରରେ ଭୂମିକମ୍ପ ହେବାରୁ ସେ କଟକ ଠାରୁ ଭୂମିକମ୍ପ କାର୍ଯ୍ୟ ସକାଶେ ପାଟଣା ଯାତ୍ରା କଲେ। ପାଟଣାରୁ ଫେରି ଗୋପବଂଧୁ ଚୌଧୁରୀଙ୍କ ଘରେ ଅବସ୍ଥାନ ରହଣି କରିବେ ଓ ଯାଜପୁର, ଭଦ୍ରକ ଓ ବାଲେଶ୍ୱରରେ ତାଙ୍କର ଯାତ୍ରା ସେଷ ହେବ ବୋଲି ସ୍ଥିର ହୋଇଥିଲା। କଟକରୁ ବହୁ କୁଦ, ସାଲେପୁର ଓ କେନ୍ଦ୍ରାପଡା ହୋଇ ଯାଜପୁରରେ ଯାତ୍ରା ଶେଷ କରିବେ ବୋଲି ସ୍ଥିର ହେଲା। ପଦଯାତ୍ରାରେ ଚମ୍ପାପୁର ଆସିବା କଥା ନଥିଲା। ଗୋବିନ୍ଦ ବାବୁ ଗାନ୍ଧିଜୀଙ୍କୁ ସବୁ କଥା କହିଲେ। ତେଣୁ କାର୍ଯ୍ୟକ୍ରମର ପଥ ପରିବର୍ତ୍ତନ ହେଲା। ପାଟଣାରୁ ଫେରି ବୈରୀ ଷ୍ଟେସନରେ ଓହ୍ଲାଇବେ ଏବଂ ଚମ୍ପାପୁର ଆଶ୍ରମରେ ୨ ଦିନ ରହଣି କରିବେ।

ହାଓ୍ଵଡାରୁ ଆସୁଥିବା ପୁରୀ ଏକ୍ସପ୍ରେସ ବୈରୀ ଷ୍ଟେସନରେ ରହେ ନାହିଁ। ତେଣୁ ଗୋବିନ୍ଦ ବାବୁ ହେଡ୍ ଅଫିସକୁ ଚିଠି ଲେଖି ବୈରୀରେ ୫ ମିନିଟ୍ ରହଣିର ବ୍ୟବସ୍ଥା କଲେ। ୧୯୩୪ ମସିହା ମେ ୪ ତାରିଖ ଦିନ ଗାନ୍ଧିଜୀ ଚମ୍ପାପୁର ଆଶ୍ରମରେ ଆସି ପହଞ୍ଚିଲେ।

ଏଠାକୁ ଆସିବା ପୂର୍ବରୁ ଗାନ୍ଧିଜୀ କେତେ ଗୁଡିଏ ବେନାମୀ ଚିଠି ଗୋବିନ୍ଦ ବାବୁଙ୍କ ବିରୁଦ୍ଧରେ ପାଇଥିଲେ ସେଗୁଡିକ ତାଙ୍କୁ ଦେଖାଇଲେ। ଆଶ୍ରମ ଛାଡି ପୁଣି ପଦଯାତ୍ରା ଆରମ୍ଭ କଲେ। ଗୋବିନ୍ଦ ବାବୁ ଗାନ୍ଧିଜୀଙ୍କ ସହିତ ଭଦ୍ରକ ପର୍ଯ୍ୟନ୍ତ ଯାଇଥିଲେ କିନ୍ତୁ ଗାନ୍ଧିଜୀ ସୁଖ ମନରେ ଓଡିଶାରୁ ଫେରି ନଥିଲେ ବୋଲି ଗୋବିନ୍ଦ ବାବୁ ଅନୁଭବ କଲେ। ପଣ୍ଡିତ ନୀଳକଣ୍ଠ ଦାସ ଗୋବିନ୍ଦ ବାବୁଙ୍କୁ ସାନ୍ତ୍ୱନା ଦେଇଥିଲେ।

୧୯୨୫ ମସିହାରେ ଖଦିକାମ କରିବାକୁ ଜୁନ ମାସରେ ଚମ୍ପାପୁର ଅଞ୍ଚଳକୁ ବାଛିଥିଲେ। ୧୯୨୦ ମସିହାରେ ଗୋଟିଏ ସ୍ଥାୟୀ ଅନୁଷ୍ଠାନ ଗଢିବାକୁ ସଂକଳ୍ପ ନେଇଥିଲେ। ଉପକରଣ ସଂଗ୍ରହ ଓ ଘର ନିର୍ମାଣ କାମରେ ୩ ବର୍ଷ ଯାଇଛି। ଆଶ୍ରମ ପାଇଁ କାହାରି ଠାରୁ ସାହାଯ୍ୟ ସହାନୁଭୂତି ପାଇ ନାହାନ୍ତି ବରଂ ତାଙ୍କ ବିରୁଦ୍ଧରେ ଗାନ୍ଧିଜୀଙ୍କ ପାଖକୁ ବେନାମୀ ଚିଠି ଲେଖା ହୋଇଥିଲା। କିନ୍ତୁ କଇଥାର ଗ୍ରାମବାସୀ କହନ୍ତି ସେମାନେ ଏହି ଆଶ୍ରମ ପାଇଁ ଜମି ଦାନ କରିଛନ୍ତି ଗୋବିନ୍ଦ ବାବୁଙ୍କ ଅନୁରୋଧରେ। ଜମି ଦାତା ମାନେ ହେଲେ

୧. ଶ୍ରୀ ପଦନ ସ୍ୱାଇଁ, ୨. ଶ୍ରୀ କସ୍ତୁରୀ ସ୍ୱାଇଁ, ୩. ଶ୍ରୀ କରୁଣାକର ସ୍ୱାଇଁ, ୪. ଶ୍ରୀ ଫକୀର ସ୍ୱାଇଁ, ୫. ଶ୍ରୀ ଦ୍ୱାରିକା ନାଥ ସ୍ୱାଇଁ, ୬. ଶ୍ରୀ ମଣି ସ୍ୱାଇଁ, ୭. ଶ୍ରୀ ବାଳକୃଷ୍ଣ ସ୍ୱାଇଁ, ୮. ଶ୍ରୀ ମନ୍ଦର ସ୍ୱାଇଁ, ୯. ଶ୍ରୀ ଶଙ୍କର ସ୍ୱାଇଁ, ୧୦. ଶ୍ରୀ କେଳୁ ସ୍ୱାଇଁ, ୧୧. ଶ୍ରୀ ଧନି ସ୍ୱାଇଁ, ୧୨. ଶ୍ରୀ ଜଗୁ ସ୍ୱାଇଁ, ୧୩. ଶ୍ରୀ ପଞ୍ଚୁ ମହାରଣା, ୧୪. ଶ୍ରୀ ସୁଦର୍ଶନ ଜେନା ଇତ୍ୟାଦି।

ହରିଜନ ପଦଯାତ୍ରା ସମୟରେ ଗାନ୍ଧିଜୀ ଶ୍ରୀ ଗୋପବଂଧୁ ଚୌଧୁରୀଙ୍କୁ ଭଲ ଭାବରେ ଚିହ୍ନିଲେ। ତାଙ୍କର ପିତା ଓକିଲାତି କରୁଥିଲେ। ଓଡିଶାର ଗୋବିନ୍ଦ ବାବୁଙ୍କ ବ୍ୟତୀତ ଗାନ୍ଧିଜୀ କାହାକୁ ଚିହ୍ନି ନ ଥିଲେ। ଓଡିଶା ବିଷୟରେ ଗାନ୍ଧିଜୀ ଗୋବିନ୍ଦ ବାବୁଙ୍କ ମତାମତ ପଚାରୁଥିଲେ। କିନ୍ତୁ ବଂଶଗତ ଖ୍ୟାତି ଦୃଷ୍ଟିରୁ ଶ୍ରୀ ଗୋପବଂଧୁ ଚୌଧୁରୀ ତୁଳନାରେ ନିଜରୁ ଅକିଞ୍ଚନ ମନେ କରୁଥିଲେ। ଆଶ୍ରମ ତଥା କର୍ମୀମାନଙ୍କ ବିଷୟରେ ଭାବି ନିଜକୁ ଅସହାୟ ମନେ କରୁଥିଲେ।

କଳକଳା ଆଶ୍ରମକୁ ସୁଦୃଢ଼ କରିବାକୁ ଚେଷ୍ଟା କଲେ କାରଣ ଗ୍ରାମର ଅର୍ଦ୍ଧ ଶିକ୍ଷିତ, ବେକାର ଯୁବକଙ୍କୁ ତାଲିମ ଦେଇ କର୍ମୀ କରିବାକୁ ପଡିବ । ଚାନ୍ଦା ଆଦାୟ, ହିସାବ ରଖିବା, କର୍ମୀ ମାନଙ୍କ କାର୍ଯ୍ୟ ତଦାରଖ କରିବା ଇତ୍ୟାଦି । ତାଙ୍କ ବିରୁଦ୍ଧରେ ନାନା ବିରୁଦ୍ଧ ରିପୋର୍ଟ ଗାନ୍ଧିଜୀଙ୍କ ପାଖରେ ପହଞ୍ଚିଥିଲା ଏବଂ ଗାନ୍ଧିଜୀ ଗୋବିନ୍ଦ ବାବୁଙ୍କୁ ଜଣାଇ ଦେଉଥାନ୍ତି ।

୧୯୩୬ ମସିହାରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ୧୯୩୫ ମସିହାର ଶାସନ ଖସଡା ଅନୁସାରେ ନିର୍ବାଚନ ହେଲା । ଏହି ନିର୍ବାଚନରେ ଗୋବିନ୍ଦ ବାବୁ ମଧୁପୁର ରାଜାଙ୍କ ସହିତ ଲଡି ଅଳ୍ପ ଭୋଟରେ ହାରିଗଲେ । ସେହି ନିର୍ବାଚନରେ ଶ୍ରୀ ବିଶ୍ୱନାଥ ଦାଶ ମୁଖ୍ୟମନ୍ତ୍ରୀ ହେଲେ । ଗୋବିନ୍ଦ ବାବୁଙ୍କ ଦୁର୍ଦ୍ଦିନ ସମୟରେ ବାବୁ ହରେକୃଷ୍ଣ ମହତାବ, ଆଶାର ସଂପାଦକ ଶଶୀ ଭୂଷଣ ରଥ ଓ ଶ୍ରୀ ଲିଙ୍ଗରାଜ ରଥ ପ୍ରଭୃତି ତାଙ୍କୁ ଉତ୍ସାହିତ କରିଛନ୍ତି ଓ ସହାନୁଭୂତି ଜଣାଇଛନ୍ତି । ପ୍ରାଦେଶିକ କଂଗ୍ରେସ କମିଟି ନିର୍ବାଚନରେ ପଣ୍ଡିତ ନୀଳକଣ୍ଠ ଦାସ ସଭାପତି ହେଲେ । ମହତାବ ବାବୁ ହାରିଯାଇ ଅଖିଳ ଭାରତ କଂଗ୍ରେସ କମିଟିର ସଭାପତି ସୁଭାଷ ଚନ୍ଦ୍ର ବୋଷଙ୍କୁ ଧରି ପ୍ରାଦେଶିକ କମିଟିରେ ସଭ୍ୟ ରହିଲେ ।

ଶ୍ରୀ ନବକୃଷ୍ଣ ଚୌଧୁରୀ କୃଷକ ସଂଗଠନ କଲେ ଓ କଂଗ୍ରେସରେ ସାମ୍ୟବାଦୀ ଦଳ ଗଠନ କଲେ । କଂଗ୍ରେସ ଓ ଗାନ୍ଧିଜୀଙ୍କର ପ୍ରକାଶ୍ୟ ସମାଲୋଚନା କଲେ । କଂଗ୍ରେସରେ ରହି ଏପରି କାର୍ଯ୍ୟରେ ନବକୃଷ୍ଣ ଚୌଧୁରୀଙ୍କୁ ପଣ୍ଡିତ ନୀଳକଣ୍ଠ ଦାସ ବିରୋଧ କଲେ । ବଡଚଣା ଓ ଧର୍ମଶାଳା ତାଙ୍କର କର୍ମକ୍ଷେତ୍ର ଥିଲା । ଏ ଅଞ୍ଚଳର ସମସ୍ତ ଆବାଳ ବୃଦ୍ଧ ବନିତା ଗୋବିନ୍ଦ ବାବୁଙ୍କୁ ଜାଣନ୍ତି ଏବଂ ଶ୍ରଦ୍ଧା ଓ ଭକ୍ତି କରନ୍ତି । ନବ ବାବୁ କୃଷକ ଆନ୍ଦୋଳନ ପାଇଁ ଧର୍ମଶାଳା ଅଞ୍ଚଳକୁ ବାଛିଲେ । ତାଙ୍କର ଅନୁଗାମୀ ମାନେ ତାଙ୍କୁ ଓଡିଶାର ଜବାହର ଲାଲ୍ ନେହେରୁ ବୋଲି ପ୍ରଚାର କଲେ । ଏଣୁ ଧର୍ମଶାଳାର ଅଳ୍ପ କେତୋଟି ଗ୍ରାମକୁ ଛାଡି ଦେଲେ ଆଉ ସବୁ ଗ୍ରାମ ଗୋବିନ୍ଦ ବାବୁଙ୍କ ରାଜନୈତିକ କାର୍ଯ୍ୟ ପାଇଁ ଅନୁକୂଳ ନ ଥିଲା । ଅଳ୍ପ କେତେକ କର୍ମୀ ଯଥା ଖଣ୍ଡିତର ଶ୍ରୀ ବାଞ୍ଛାନାଧି ପଣ୍ଡା, ମହନ୍ତ ନବ କିଶୋର ଦାସ, ରାଜ କିଶୋର କର ଓ ବୃନ୍ଦାବନ ଶତପଥୀଙ୍କୁ ଛାଡି ଦେଲେ ଅନ୍ୟମାନେ ଗୋବିନ୍ଦ ବାବୁଙ୍କଠାରୁ ଆଡେଇ ଗଲେ ।

୧୯୩୭ ମସିହାରେ ଶ୍ରୀ ସାରଙ୍ଗଧର ଦାସଙ୍କ ସଭାପତିତ୍ୱରେ କଟକ ଠାରେ ଗଡଜାତ ପ୍ରଜାସମ୍ମିଳନୀର ୨ୟ ବୈଠକ ବସିଲା । ଡାକ୍ତର ପଟ୍ଟାଭି

ସିଠାରାମାୟ୍ୟ ଏହାର ସଭାପତି ହେଲେ । ଗଡଜାତର ଦାୟିତ୍ୱ ପୂର୍ଣ୍ଣ ସ୍ୱାୟତ୍ତଶାସନ ଦାବୀ ଓ ପ୍ରଚଳିତ ଶାସନ ପ୍ରଥାର ତଦନ୍ତ ପାଇଁ ଗୋଟିଏ କମିଟି ବସାଇବା ପ୍ରସ୍ତାବ ଗୃହୀତ ହେଲା । ନିଖିଳ ଭାରତ ରାଜ୍ୟ ପ୍ରଜାସମ୍ମିଳନୀର ସଂପାଦକ ଶ୍ରୀ ବଳବନ୍ତ ରାଏ ମେହେଟା ଉକ୍ତ କମିଟିର ସଭ୍ୟ ହେଲେ । ମହତାବ ବାବୁ ପ୍ରଜାଙ୍କର ପ୍ରଧାନ ପରାମର୍ଶଦାତା ହେଲେ । ତାଳଚେର, ଢେଙ୍କାନାଳ, ରଣପୁର ଓ ନୟାଗଡରେ ପ୍ରଜା ଆନ୍ଦୋଳନ ଜୋର୍‌ଦାର୍ ହେଲା । ଢେଙ୍କାନାଳରେ ଗୁଳି ଚାଲିବାରୁ ବାଳକ ବାଜୀ ରାଉତର ମୃତ୍ୟୁ ହେଲା । ନବକୃଷ୍ଣ ଚୌଧୁରୀଙ୍କ ଯୋଗୁଁ ବାଜୀ ରାଉତ କଥା ସମସ୍ତେ ଜାଣିଲେ । ନବ ବାବୁ କୃଷକ ଆନ୍ଦୋଳନ ଛାଡି ପ୍ରଜା ଆନ୍ଦୋଳନରେ ମିଶିଲେ । ଢେଙ୍କାନାଳର ପଲିଟାକାଲ୍ ଏଜେଣ୍ଟ ଥିଲେ ବେଜେଲ ଗେଟ୍ । ସେ ଗଡଜାତ ଶାସନ ରିପୋର୍ଟରେ ପ୍ରଜାଙ୍କ ସପକ୍ଷରେ ମତ ଦେଇଥିଲେ । ସେ ପ୍ରଜା ବିରୋଧୀ ନ ଥିଲେ । କିନ୍ତୁ ସେ ମଣିଷ ମରା ସାହେବ ବୋଲି ପ୍ରଚାରିତ ହୋଇ ଯିବାରୁ ରଣପୁରରେ ଲୋକମାନେ ତାଙ୍କୁ ପିଟି ପିଟି ମାରି ଦେଲେ ୧୯୩୯ ଜାନୁୟାରୀ ୫ ତାରିଖ ପୌଷ ପୂର୍ଣ୍ଣିମା ଦିନ । ଏହି ସମୟରେ ଶ୍ରୀ ସାରଙ୍ଗ ଧର ଦାସଙ୍କ ବାସଭବନରେ ପ୍ରଜା ସମ୍ମିଳନୀର କାର୍ଯ୍ୟନିର୍ବାହୀ ବୈଠକ ବସିଥାଏ । ଶ୍ରୀ ରାଧାନାଥ ରଥ କବିରାଜ ବାଲୁକେଶ୍ୱର ଆଚାର୍ଯ୍ୟ ଓ ଗୋବିନ୍ଦ ବାବୁ ୩ ଜଣ ବୈଠକରେ ଥିଲେ ।

ବାବୁ ହରେକୃଷ୍ଣ ମହତାବ ରଣପୁରରେ ପହଞ୍ଚି ବେଜେଲ୍ ଗେଟଙ୍କର କ୍ଷତ ବିକ୍ଷତ ଶବକୁ ଦେଖିଲେ । ପ୍ରଜାମାନଙ୍କୁ ରାଜ୍ୟ ଛାଡି ପଳାଇ ଯିବାକୁ ଉପଦେଶ ଦେଇ ଫେରି ଆସିଲେ ।

ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିବାରୁ ଇଂରେଜ ସରକାରଙ୍କ ପୂର୍ବ କ୍ଷମତା ନ ଥିଲା । ମାତ୍ର ଲାଟ ନିଜ ଅଧିକାର ବଳରେ ମନ୍ତ୍ରୀମଣ୍ଡଳ ଭାଙ୍ଗି ଦେଇ ସମସ୍ତ ଶାସନ ନିଜ ହାତକୁ ନେଇ ଯାଇ ପାରନ୍ତି । ବିଶ୍ୱନାଥ ଦାସ ସମସ୍ତ ପୋଲିସ ଫୌଜ ରଣପୁର ପଠାଇବାକୁ ମନା କରିଦେଲେ । ପ୍ରଜାମାନେ ଘରକୁ ଫେରି ଆସିଲେ । ସ୍ୱତନ୍ତ୍ର ବିଚାରକ ନିଯୁକ୍ତ ହୋଇ ବେଜେଲ୍ ଗେଟ୍ ହତ୍ୟାକାଣ୍ଡର ବିଚାର ହେଲା । ଏଥିରେ ବାବୁ ହରେକରଷ୍ଣ ମହତାବ ଓ ଆଉ କେତେକଙ୍କୁ ଜଡିତ କରାଯାଇ ଫାଶୀ ଦେବାର ମସୁଧା ଥିଲା । ଏକଥା ସରକାରୀ ଓକିଲ ସ୍ୱର୍ଗୀୟ ଚିନ୍ତାମଣି ଆଚାର୍ଯ୍ୟ ଜାଣିଥିଲେ । ଶରୀରର ଅସୁସ୍ଥ ତା ଯୋଗୁଁ ଗଡଜାତରେ ଆଉ ପ୍ରଜା ଆନ୍ଦୋଳନ ଚଳାଇବାକୁ ଇଚ୍ଛା ନ ଥିଲା । ଓ୍ୱାର୍ଦ୍ଧା ଆଶ୍ରମରେ ଗାନ୍ଧିଜୀ

ଓଡିଶାର ଯାହାକୁ ଦେଖନ୍ତି ଗୋବିନ୍ଦ ବାବୁଙ୍କ ବିଷୟରେ ପଚାରନ୍ତି । ଏକଥା ନିତ୍ୟାନନ୍ଦ କାନୁନ୍‌ଗୋ ଗୋବିନ୍ଦ ବାବୁଙ୍କୁ କହିଥିଲେ ଓ ପଣ୍ଡିତ ଗୋପବଂଧୁ ଦାସ ମଧ୍ୟ ଗୋବିନ୍ଦ ବାବୁଙ୍କ ପାଖକୁ ଲେଖିଥିଲେ ।

## ଓଡିଶାରେ ଗାନ୍ଧି ସେବା ସଂଘ

୧୯୩୪ ମସିହାରେ ଗୋପବଂଧୁ ଚୌଧୁରୀ ଗାନ୍ଧି ସେବା ସଂଘ ଗଠନ କରି ବରୀ ଗ୍ରାମକୁ କର୍ମକ୍ଷେତ୍ର ରୂପେ ବାଛିଲେ । ଏପରିକି ଗାନ୍ଧିଜୀ ମଧ୍ୟ ଗୋବିନ୍ଦ ବାବୁଙ୍କୁ ଖଣ୍ଡେ ପତ୍ର ଲେଖିଥିଲେ ବରୀ ସେବା ସଂଘରେ ଯୋଗ ଦେବାକୁ । ଗାନ୍ଧିଜୀ ଗୋବିନ୍ଦ ବାବୁଙ୍କୁ ନ ପଚାରି ତାଙ୍କ ବିରୁଦ୍ଧରେ ଅନ୍ୟମାନଙ୍କ କଥା ଶୁଣି ତାଙ୍କ କାଗଜରେ ପ୍ରକାଶ କରି ଦେଲେ । ତେଣୁ ମନ ଦୁଃଖରେ କୌଣସି ଆଶ୍ରମରେ ଯୋଗ ଦେଲେନି । ୧୯୧୮ ମସିହାରେ ପ୍ରଥମେ ସାବରମତୀ ଆଶ୍ରମରେ ଯୋଗ ଦେଇଥିଲେ । ଗୋପବଂଧୁ ଚୌଧୁରୀଙ୍କର ଚାଲିଚଳଣ ଦେଖି ଗାନ୍ଧିଜୀଙ୍କର ଏକ ନକଲି ଅବତାର ବୋଲି ଗୋବିନ୍ଦ ବାବୁ ମନରେ ଭାବିଲେ ।

ଗାନ୍ଧି ଯୁଗରେ ବିଭିନ୍ନ ଅନୁଷ୍ଠାନ ଓ କେନ୍ଦ୍ର ଗଠନ କରାଯାଇଥିଲେ ମଧ୍ୟ ତାହାର ସ୍ଥାୟିତ୍ୱ ରହି ନ ଥିଲା । ସେହିପରି ଗୋପବଂଧୁ ଚୌଧୁରୀଙ୍କ ଅନୁଷ୍ଠଆନ ଗୁଡିକ ଦୃଢ ସଂଗଠନ ଅଭାବରୁ ସ୍ଥାୟିତ୍ୱ ରହିଲା ନାହିଁ ।

ପଚିଶ ଏକର ଜମି ଉପରେ କଳକଳା ଠାରେ ଏକ ଶାଖା ଆଶ୍ରମ ସ୍ଥାପନ କରି ଦେଶ ସେବା କରିବାକୁ ଗୋବିନ୍ଦ ବାବୁ ଇଚ୍ଛା କରିଥିଲେ । କଳକଳା ଆଶ୍ରମ ପାଇଁ ବିଶ୍ୱସ୍ତକର୍ମୀ, ସାହାଯ୍ୟ ସହଯୋଗର ଅଭାବ ଏବଂ ଏହାକୁ କାର୍ଯ୍ୟକାରୀ ନ କରାଇ ଦେବାପାଇଁ ଏକ ବିଷବଳୟ ସୃଷ୍ଟି ହେଲା । ଗୋବିନ୍ଦ ବାବୁ ଉତ୍କଟ ଆର୍ଥିକ ଦୁର୍ଗତି ମଧ୍ୟ ଦେଇ ଗତି କରୁଥିଲେ । ଇଚ୍ଛା କରିଥିଲେ ଆଶ୍ରମକୁ କୌଣସି କଲିକତାର ଝୋଟ କମ୍ପାନୀକୁ ଲକ୍ଷେ ଟଙ୍କାରେ ବିକ୍ରି କରି ଦେଇ ପାରି ଥାନ୍ତେ । ମାତ୍ର ଆଶ୍ରମ କାର୍ଯ୍ୟରେ ଶିକ୍ଷାପ୍ରସାର ଗୋଟିଏ କାର୍ଯ୍ୟକ୍ରମ ଥିଲା । ତେଣୁ ୧୯୪୨ ମସିହାରେ ଜାନୁୟାରୀ ମାସରେ ଏହାକୁ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କରାଗଲା ।

୧୯୩୯ ମସିହାରେ ୨ୟ ବିଶ୍ୱଯୁଦ୍ଧରେ ଇଂରେଜ ସରକାରକୁ ଭାରତକୁ ଲିପ୍ତ କଲେ ବିନା ଲୋକ ମତରେ । ଫଳ ସ୍ୱରୂପ ମହାତ୍ମାଜୀ ସତ୍ୟାଗ୍ରହ ଆରମ୍ଭ କଲେ ଓ କଂଗ୍ରେସ କମିଟିର ସଭ୍ୟମାନେ ମଧ୍ୟ ବିଭିନ୍ନ ପ୍ରଦେଶରେ ସତ୍ୟାଗ୍ରହ କଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ଚଞ୍ଚକତା କରି ପ୍ରାଦେଶିକ କଂଗ୍ରେସ କମିଟି

ସଭାପତି ପଦରୁ ହଟାଇ ଦିଆଗଲା । କୋରାପୁଟର ଶ୍ରୀ ବିଶ୍ୱାସ ରାୟ୍ ସଭାପତି ହେଲେ । ଗୋବିନ୍ଦ ବାବୁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମର୍ଥକ ଥିଲେ । ତେଣୁ ସେ ସତ୍ୟାଗ୍ରହୀ ହେବାପାଇଁ ମହାତ୍ମା ଗାନ୍ଧିଙ୍କର ଆଶିର୍ବାଦ ନ ଥିଲା ।

୧୯୪୦ ମସିହାରେ ଗୋବିନ୍ଦ ବାବୁ ଆତ୍ମଜୀବନୀ ପ୍ରକାଶ କଲେ ଓ ୧୯୪୨ ମସିହାରେ ଚମ୍ପାପୁର ଆଶ୍ରମ ସ୍କୁଲରେ ପରିଣତ ହେଲା । କଳକଳା ଶାଖା ଆଶ୍ରମକୁ କୁଷ୍ଠ ଆଶ୍ରମରେ ପରିଣତ କରାଗଲା । ଏଥିରେ ସହାୟକ ଥିଲେ ଶ୍ର ଲକ୍ଷ୍ମୀ ନାରାୟଣ ସାହୁ । ତାଙ୍କ କହିବାନୁସାରେ କଳକଳା ଆଶ୍ରମର ସ୍ଥାବର ଅସ୍ଥାବର ସମ୍ପତ୍ତି ହିନ୍ଦ୍ ସେବକ ସମାଜ ନାମରେ ରେଜେଷ୍ଟ୍ରି କରାଗଲା । ସ୍କୁଲ ପରିଚାଳନା କମିଟି ନାମରେ ଚମ୍ପାପୁର ଆଶ୍ରମର କୋଠାବାଡି ରେଜିଷ୍ଟ୍ରି କରାଗଲା । ଲକ୍ଷ୍ମୀ ନାରାୟଣ ସାହୁ ସ୍କୁଲକୁ କିଛି ଅର୍ଥ ସାହାଯ୍ୟ ଦେଇଛନ୍ତି । ଧାନ, ଗୋରୁ, ବଳଦ ସବୁ ବିକି ସ୍କୁଲ କାର୍ଯ୍ୟରେ ଲଗା ଗଲା । କଟକ ଟ୍ରେଡିଂ କମ୍ପାନୀରେ ଥିବା ୨ ହଜାର ଟଙ୍କା ସ୍କୁଲ କାମରେ ଲଗା ଗଲା । ୧୯୪୫ ମସିହାରେ ସ୍କୁଲ ଛାଡି ଚମ୍ପାପୁର ସବୁଦିନ ପାଇଁ ତ୍ୟାଗ କଲେ ।

ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ 'ନବ ଭାରତ'ରେ ଏକ ଲେଖା ପଢି ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉପରେ ରୁଷ୍ଟ ଥିଲେ । ଡକ୍ଟର ରାଜେନ୍ଦ୍ର ପ୍ରସାଦ ଓଡିଶା କଂଗ୍ରେସ ମନ୍ତ୍ରୀମଣ୍ଡଳରେ କେତେକ ଦୁର୍ନୀତି ଅଭିଯୋଗ ଓଡିଶା, ବିହାର ପ୍ରାଦେଶିକ କମିଟିର ସଭାପତି ଭାବରେ ତଦନ୍ତ କରିବାକୁ ଆସିଥିଲେ । ତାଙ୍କ ସମୁଖରେ ମାଳତୀ ଚୌଧୁରୀ ଯେପରି ଅଶୋଭନୀୟ୍ ଆଚରଣ ଦେଖାଇଲେ ରାଜେନ୍ଦ୍ର ପ୍ରସାଦ ଆଉ ତଦନ୍ତ ନ କରି ଓଡିଶାରୁ ଫେରିଗଲେ । କୋରାପୁଟର ଶ୍ରୀ ରାଧାକୃଷ୍ଣ ବିଶ୍ୱାସ ରାୟଙ୍କୁ ପ୍ରାଦେଶିକ କମକିଟିର ସଭାପତି କରାଗଲା ବ୍ରହ୍ମପୁର ଅଧିବେଶନରେ । ଫଳରେ ପଣ୍ଡିତ ନୀଳକଣ୍ଠ ଦାସ ଅପମାନିତ ବୋଧ କରି କଂଗ୍ରେସ ଛାଡି ସୁବାଷ ବୋଷଙ୍କ ପରଓ୍ୱାର୍ଡ ବ୍ଲକରେ ଯୋଗ ଦେଲେ । ସେହି ପଣ୍ଡିତ ନୀଳକଣ୍ଠ ଦାସ ୧୯୩୬ ମସିହାରେ କଂଗ୍ରେସକୁ ଜୟଯୁକ୍ତ କରାଇଥିଲେ ।

ଚମ୍ପାପୁର ଛାଡିବା ପରେ କଟକର ପଣ୍ଡିତ ଆକୁଳି ମିଶ୍ର ତାଙ୍କ ତେଲେଙ୍ଗା ବଜାର ଘରେ ୩ ବର୍ଷ ରଖାଇ ଥିଲେ । ତାଙ୍କର ଦୁର୍ଦ୍ଦିନରେ ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ଲିଙ୍ଗରାଜ ମିଶ୍ର ଓ ଶ୍ରୀ ରାଧାନାଥ ରଥ ବହୁତ ସାହାଯ୍ୟ କରିଥିଲେ ଯାହା ଭୁଲି ହେବ ନାହିଁ । ଚମ୍ପାପୁର ଛାଡିବା ପରେ ସେ ଶ୍ୱାସ ଓ ଜ୍ୱର ରୋଗରେ ପୀଡିତ ହୋଇ ପଡିଥିଲେ ।

ଅସହଯୋଗ ଆନ୍ଦୋଳନ ସମୟରେ ସାଧାରଣ କଂଗ୍ରେସ କର୍ମୀଙ୍କ ପରି ଥାନା ପୋଡିବା, ରେଲ ପୋଲ ଭାଙ୍ଗିବା, ଡାକ ପୋଷାକ ଓ ଚୌକିଦାର ପୋଷାକ ଛଡାଇ ନେବା ଇତ୍ୟାଦି କରୁନଥିବାରୁ ସ୍ଥାନୀୟ ଥାନା ଯଥା ବଡଚଣା, ମହାଙ୍ଗା, ଟାଙ୍ଗୀ ଓ ସାଲେପୁର ପ୍ରଭୃତିର ଅଫିସରଙ୍କର ଗୋବିନ୍ଦ ବାବୁଙ୍କ ଉପରେ ବିଶ୍ୱାସ ଥିଲା।

୧୯୪୪ ମସିହାରେ ମହାତ୍ମା ଗାନ୍ଧି ଆଗାଖାଁ ପ୍ରସାଦରେ ଅଟକ ନଦୀ ଥାଆନ୍ତି। ମହାଦେବ ଦେଶାଇ ଓ ପତ୍ନୀ କସ୍ତୁରବା ସେତେବେଳକୁ ଆଉ ନ ଥାଆନ୍ତି। ସମବେଦନା ଜଣାଇବା ପାଇଁ ଗୋବିନ୍ଦ ବାବୁ ଗାନ୍ଧିଜୀଙ୍କୁ ଭେଟିବାକୁ ଚାହୁଁଥିଲେ। ଗାନ୍ଧିଜୀଙ୍କର ସ୍ୱାସ୍ଥ୍ୟର ଦେଖାଶୁଣା ଶ୍ରୀମତୀ ଅମୃତ କାଉର୍ କରୁଥାନ୍ତି। ପୁନାରେ ଗାନ୍ଧିଜୀଙ୍କୁ ଭେଟିବା ପାଇଁ ସେ ଅନୁମତି ପାଇଲେ। ସେଠାରେ କଲକଲା ଆଶ୍ରମ ଓ ଚମ୍ପାପୁର ଆଶ୍ରମ କଥା କହିଲେ। ତା'ପରେ ସର୍ଦ୍ଦାର ପଟେଲଙ୍କୁ ଯାଇ ଦେଖା କଲେ। ତାଙ୍କ ସହିତ ପୂର୍ବରୁ ଆତ୍ମୀୟତା ଥିଲା। ତା'ଛଡା ରାଜଗୋପାଳଚାରୀ, ରାଜେନ୍ଦ୍ର ପ୍ରସାଦ, ଆଚାର୍ଯ୍ୟ କ୍ରିପଲାନୀ ଓ ସ୍ୱାମୀ ଆନନ୍ଦଙ୍କ ସହିତ ମଧ୍ୟ ଘନିଷ୍ଠ ସଂପର୍କ ଥିଲା। ସର୍ଦ୍ଦାର ପଟେଲ ଗାନ୍ଧିଜୀଙ୍କର ଏକ ଚିଠି ଗୋବିନ୍ଦି ବାବୁଙ୍କୁ ବଢାଇ ଦେଲେ। ତାକୁ ନେଇ ପୁନାରୁ ବମ୍ବେ ହୋଇ ଓଡିଶାକୁ ଫେରି ଆସିଲେ। ଗାନ୍ଧିଜୀଙ୍କ ଚିଠି ଗୋବିନ୍ଦ ବାବୁଙ୍କୁ ନୂଆ କର୍ମକ୍ଷେତ୍ର ସୃଷ୍ଟି କରିବାରେ ସାହାଯ୍ୟ କଲା। ପୂର୍ବରୁ କଂଗ୍ରେସ ରାଜନୀତିରେ ତାଙ୍କୁ କେହି ଖୋଜିଲେ ନି ବିଶେଷତଃ କଟକ ଜିଲ୍ଲାର କେତେକ ବିଶିଷ୍ଟ ବ୍ୟକ୍ତି। ଏପରିକି କର୍ମୀ ମାନଙ୍କ ସହିତ ଭୋଜନ କରୁଥିବା ସମୟରେ ତାଙ୍କୁ ଜଣେ ନାରୀ ନେତ୍ରୀ ଅପମାନିତ କରିଥିଲେ।

୧୯୪୭ ଅଗଷ୍ଟ ୧୫ ତାରିଖରେ ଦେଶ ସ୍ୱାଧୀନ ହେଲା, ଭାରତ ଓ ପାକିସ୍ଥାନ ଭାବରେ। ମୁସ୍‌ଲିମର ନେତା ମହମ୍ମଦ ଅଲ୍ଲି ଜିନ୍ନାଙ୍କ କ୍ଷମତା ଲୋଭ ଓ ଅପ୍ରତିଦ୍ୱନ୍ଦୀ ନେତା ହେବାର ଲାଳସା ଏହି ପୁରାତନ ମହାଦେଶକୁ ୨ ଭାଗରେ ବିଭକ୍ତ କଲା ଏବଂ ଅସଂଖ୍ୟ ନରନାରୀଙ୍କ ରକ୍ତ ବୋହିଲା।

ଓଡିଶାର ଗଡକାତ ଆନ୍ଦୋଳନ ୧୯୧୪ରେ ପ୍ରଥମେ ଗୋବିନ୍ଦ ବାବୁ ସୃଷ୍ଟି କରିଥିଲେ। ଏକଥା ମହାତ୍ମା ଗାନ୍ଧି ଓ ଦୀନବଂଧୁ ଆଣ୍ଡ୍ରୁଜଙ୍କୁ ପ୍ରଥମ ସାକ୍ଷାତରେ କହିଥିଲେ। ଓଡିଶା ଖଣ୍ଡ ବିଖଣ୍ଡିତ ହୋଇ ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜା ରାଜୁଡା ରାଜ୍ୟ ଭାବରେ ଥିଲା।

ଦେଶ ସ୍ୱାଧୀନ ହେବାପରେ ଅର୍ଥାତ ୧୯୪୭ ଅଗଷ୍ଟ ୧୫ ପରେ ଗଡଜାତ ଗୁଡିକରେ ପ୍ରଜାମଣ୍ଡଳି ଗଠିତ ହୋଇ ତୀବ୍ର ଆନ୍ଦୋଳନର ସୂତ୍ରପାତ ହେଲା । ରାଜାଶାସନକୁ ଅବଜ୍ଞା କରି ପ୍ରଜାଶାସନ ଜାରି କରିବାକୁ ସର୍ଦ୍ଦାର ପଟେଲ ନିର୍ଦ୍ଦେଶ ଦେଇଥିଲେ ଏବଂ ଗଡଜାତ ଗୁଡିକୁ ଓଡିଶାରେ ମିଶାଇ ଦେବାକୁ ଶ୍ରୀ ମହତାବ ତାଙ୍କର ସ୍ପଷ୍ଟ ମତ ଦେଇଥିଲେ । ତେଣୁ ୧୯୪୭ ଡିସେମ୍ବର ୧୪/୧୫ ତାରିଖରେ ଗଡଜାତ ରାଜାମାନେ ସେମାନଙ୍କ ଶାସନ କ୍ଷମତା ପ୍ରାଦେଶିକ ସରକାର ହାତରେ ଅର୍ପଣ କରି ଚୁକ୍ତି ପତ୍ରରେ ସ୍ୱାକ୍ଷର କଲେ । ଏ ବିଷୟରେ ଓଡିଶା ଭାରତର ପ୍ରଥମ ପଥ ପ୍ରଦର୍ଶକ । ଶ୍ରୀ ସାରଙ୍ଗଧର ଦାସ, ଶ୍ରୀ ପବିତ୍ର ମୋହନ ପ୍ରଧାନ, ରାଧାନାଥ ରଥ, ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି, କପିଳେଶ୍ୱର ନନ୍ଦ ଏବଂ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମିଶ୍ର ପ୍ରଭୃତିଙ୍କ ସହଯୋଗ ପାଇ ଶ୍ରୀ ହରେକୃଷ୍ଣ ମହତାବ ଦୃଢତାର ସହ ଏକାର୍ଯ୍ୟ କରିଥିଲେ । ସେ ଦିନରୁ ମହତାବ ବାବୁ ନୂତନ ଓଡିଶାର ନିର୍ମାତା ବୋଲି ସୁଖ୍ୟାତି ଅର୍ଜନ କରିଛନ୍ତି ।

ଗଡଜାତ ମିଶ୍ରଣ ପରେ ଗୋବିନ୍ଦଜୀଙ୍କ ଭାରା କ୍ରାନ୍ତ ମନ ଆଶ୍ୱସ୍ତ ହେଲା ଏବଂ ତାଙ୍କର ବହୁ ଦିନର କଳ୍ପନା ସଫଳ ହେଲା । ବର୍ତ୍ତମାନ ପୂର୍ବ ଗଡଜାତ ରାଜ୍ୟର ପ୍ରଜାଙ୍କ ଭିତରେ କାର୍ଯ୍ୟ କରି ଅବଶିଷ୍ଟ ଜୀବନ ବିତାଇ ଦେବାକୁ ଇଚ୍ଛା କଲେ ଏବଂ ଦଶପଲ୍ଲା ଫେରିଗଲେ ।

ଗଡଜାତ ମିଶ୍ରଣ ପରେ ପ୍ରତି ଷ୍ଟେଟରେ ଗୋଟିଏ ଲେଖା ପରାମର୍ଶ ଦାତା କମିଟି ଏବଂ ବ୍ୟବସ୍ଥାପନ ସଭା ସରକାର ଗଠନ କଲେ । ଏହି ଉଭୟରେ ଗୋବିନ୍ଦ ବାବୁ ରହି କାର୍ଯ୍ୟ କଲେ ଏବଂ ପ୍ରଜାଙ୍କର ହିତସାଧିତ ହୋଇଥିଲା । ମାତ୍ର ସରକାରୀ ବା ରାଜ କର୍ମଚାରୀଙ୍କ ଦ୍ୱାରା ପ୍ରପୀଡିତ ହେଉଥିଲେ ମଧ୍ୟ ଗଡଜାତ ପ୍ରଜାଙ୍କର ଭାବାନ୍ତର ଜାତ ହେଉ ନାହିଁ, ସେ ଦେଖିଲେ । ପ୍ରତି ଷ୍ଟେଟ୍‌ରେ ପ୍ରଜାମଣ୍ଡଳ ଗଠନ କରାଯାଇଥିଲା । ପ୍ରଜାମଣ୍ଡଳର ମନୋବୃତ୍ତି ଗୋବିନ୍ଦଜୀଙ୍କ ମନକୁ ପାଇଲା ନାହିଁ । ପ୍ରଜାମଣ୍ଡଳରେ ସଭାପତିଙ୍କ ଅଖଣ୍ଡ କ୍ଷମତା, ପ୍ରତିପତ୍ତି ଯୋଗୁଁ ଲୋକ ସଂଗଠନର ଭାବନା ରହିଲା ନାହିଁ । ଦେଶସେବା ମନୋଭାବ ନ ରହିଲେ ଯାହା ହେବାର କଥା ତାହା ହେଲା ।

ପରେ ଗଡଜାତର ଷ୍ଟେଟ୍ ପରାମର୍ଶଦାତା କମିଟି ଓ ଷ୍ଟେଟ ବ୍ୟବସ୍ଥାପକ ଭାଙ୍ଗି ଦେଇ ଓଡିଶା ବ୍ୟବସ୍ଥାପକ ସହିତ ମିଶା ଯାଇଥିଲା । ଷ୍ଟେଟ ମାନଙ୍କରୁ ୩୦ ଜଣ ସଭ୍ୟ ମନୋନୀତ ହୋଇଥିଲେ । ମାତ୍ର ଏଥିରେ ଗୋବିନ୍ଦ ବାବୁଙ୍କ ନାମ

ନଥିଲା । ଗଡଜାତ ମିଶ୍ରଣ ପରେ ଯେଉଁ ସାଧାରଣ ଶାସନ ପ୍ରଚଳନ କରାଗଲା ସେଥିରେ ଗଡଜାତ ଅଭ୍ୟସ୍ତ ନ ଥିଲେ । ପ୍ରଜାମଣ୍ଡଳର ତଥାକଥିତ କର୍ମୀ ତାଙ୍କୁ ସହଯୋଗ କରିବା ପରିବର୍ତ୍ତରେ ତାଙ୍କ ବିରୁଦ୍ଧରେ ମତାମତ ପ୍ରକାଶ କଲେ ।

ବିଧାନ ସଭାର ସଭ୍ୟ ହେଲେ ଗଡଜାତ ପାଇଁ କାର୍ଯ୍ୟ କରିବା ଅସୁବିଧା ହେବନି ଓ ଆର୍ଥିକ ଦୁର୍ଗତି ଦୂର ହେବ । ସେଥିପାଇଁ ନିର୍ବାଚନ ଆସି ଯିବାରୁ କଂଗ୍ରେସ ତରଫରୁ ବିଧାନସଭା ସଭ୍ୟପଦ ପାଇଁ ଗୋବିନ୍ଦଜୀ ଦରଖାସ୍ତ କଲେ । ତାଙ୍କ ଦରଖାସ୍ତକୁ ଜିଲ୍ଲା ଓ ପ୍ରାଦେଶିକ କଂଗ୍ରେସ କମିଟି ସୁପାରିଶ କଲେ ଏବଂ ଉତ୍କଳ ପାର୍ଲିଆମେଣ୍ଟାରୀ ବୋର୍ଡ ମଧ୍ୟ ଗ୍ରହଣ କଲେ । ମାତ୍ର ଦିଲ୍ଲୀରେ କାହାରି ପରାମର୍ଶରେ ଗୋବିନ୍ଦଜୀଙ୍କୁ ଗ୍ରହଣ ନ କରି ଦଶପଲ୍ଲା ରାଜା ସାହେବ ଶ୍ରୀ କିଶୋର ଚନ୍ଦ୍ର ଭଞ୍ଜଦେଓଙ୍କୁ ଗ୍ରହଣ କରାଗଲା । ଏଥିରେ ତାଙ୍କ ମନ ଦୁଃଖିତ ହେଲେ ସୁଦ୍ଧା କଂଗ୍ରେସ କୁ ଜିତାଇବା ପାଇଁ ସେ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି । ଦଶପଲ୍ଲାରେ ରହି କାର୍ଯ୍ୟ କରିବା ପ୍ରତିକୂଳ ପରିସ୍ଥିତି ସୃଷ୍ଟି ହେଲା । ଦଶପଲ୍ଲା ରାଜା ସାହେବ କଂଗ୍ରେସ ପ୍ରତିନିଧି ହୋଇ ନିର୍ବାଚନ ଲଢିଲେ ଏବଂ ଶେଷରେ କଂଗ୍ରେସର ଜଣେ ମନ୍ତ୍ରୀ ହେଲେ । ଦଶପଲ୍ଲାରେ ରହି କାର୍ଯ୍ୟ କଲେ ରାଜା ସାହେବଙ୍କ ସହିତ ମତ ଅମେଳ ଘଟିବାର ଆଶଙ୍କା କରି ପୁଣି ସେ କଟକ ଫେରି ଆସିଲେ । କଟକ ଆସି ସ୍ୱରାଜ୍ୟ ଆଶ୍ରମରେ ରହିଲେ । ୧୯୫୪ ମସିହାରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ଚାଲିଥାଏ ।

ନୂତନ ଆଦର୍ଶରେ ଭାରତ ଗଢିବାକୁ ଶ୍ରୀ ଜବାହର ଲାଲ୍ ନେହେରୁ, "ଭାରତ ସେବକ ସମାଜ" ନାମରେ ଗୋଟିଏ ସଂଗଠନ ଗଢିଲେ । ପ୍ରତି ଷ୍ଟେଟରେ ଏହାର କାମ ଚାଲିଲା । ଓଡିଶାରେ କାର୍ଯ୍ୟ କରିବାକୁ ନବ ବାବୁ ଗୋବିନ୍ଦଜୀଙ୍କୁ ବାଛିଲେ ଏବଂ ସେ ଶ୍ରୀ ଜବାହର ଲାଲ୍ ନେହେରୁଙ୍କ ଦ୍ୱାରା ସଂଯୋଜକ ଭାବରେ ନିଯୁକ୍ତ ହେଲେ ।

୧୯୫୫ ମସିହାରେ ମାର୍ଚ୍ଚ ପ୍ରଥମ ସପ୍ତାହରେ ନାଗପୁରରେ ଭାରତ ସେବକ ସମାଜ ବାର୍ଷିକ ସମ୍ମିଳନୀରେ ଯୋଗ ଦେଲେ ଏବଂ ଓଡିଶା କଥା ବୁଝାଇଲେ । କେନ୍ଦ୍ରରୁ ନାନା କାର୍ଯ୍ୟ ପାଇଁ ଅର୍ଥ ପାଇବାର ଆଶା ମିଳିଲା । ଓଡିଶାକୁ ଫେରି ଅକ୍ଳାନ୍ତ ପରିଶ୍ରମ କରିଥିବା ହେଉ ରକ୍ତ ବାନ୍ତି ଓ ରକ୍ତ ଝାଡା ରୋଗରେ ୪ ମାସ କାଳ କଟକ ମେଡିକାଲରେ ପଡିଲେ । ସେ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, ସମ୍ବଲପୁର, କେନ୍ଦୁଝର, ବଲାଙ୍ଗିର ଓ କଳାହାଣ୍ଡି ଇତ୍ୟାଦି ଜିଲ୍ଲା ବୁଲି

ଶାଖା ସମାଜ ଗଠନ କରିଥିଲେ । ସ୍ୱାସ୍ଥ୍ୟ ଭଗ୍ନ ହୋଇ ଆଉ କାର୍ଯ୍ୟ କରିବାର ଶକ୍ତି ରହିଲା ନାହିଁ ଏବଂ ଏଥିପାଇଁ ପୂର୍ଣ୍ଣ ବିଶ୍ରାମ ପାଇଁ ସେ ସେବକ ସମାଜର ସମ୍ପାଦକ ଶ୍ରୀ କୃଷ୍ଣ ପ୍ରସାଦଙ୍କ ପାଖକୁ ପତ୍ର ଲେଖିଲେ । ଶ୍ରୀ ପ୍ରସାଦ ତାଙ୍କୁ ପ୍ରଶଂସା କରି ଲେଖିଥିଲେ ।

"ଏହା ଆମ ପାଇଁ ଦୁର୍ଭାଗ୍ୟର ବିଷୟ ଯେ ଆପଣ ଏପରି ଗୁରୁତର ଭାବରେ ଅସୁସ୍ଥ । ଆମ୍ଭେ ଈଶ୍ୱରଙ୍କ ପ୍ରତି କୃତଜ୍ଞ ଯେ ଆପଣ ତାହା ପାର ହୋଇ ଯାଇଛନ୍ତି । ଆମର ଆଶା ଆପଣଙ୍କର ଭାରତ ସେବକ ସମାଜ ପ୍ରତି ଶ୍ରଦ୍ଧା ଅତୁଟ ରହିବ । ଆପଣଙ୍କ ଭଳି ସମାଜ ସେବା ଏବଂ ପ୍ରଭାବ ଥିବା ପୃଷ୍ଠଭୂମିର ବ୍ୟକ୍ତି ସମାଜ ପାଇଁ ଅତ୍ୟନ୍ତ ପ୍ରୟୋଜନୀୟ ହେବ"।

## ଉପସଂହାର

ଦେଶର ସ୍ୱାଧୀନତା ଦେଖିବାକୁ ମହାତ୍ମା ଗାନ୍ଧି ବେଶି ଦିନ ଜୀବିତ ନ ଥିଲେ । ନାଥୁରାମ ଗଡ୍‌ସେ ବୋଲି ଜଣେ ଆତତାୟୀର ଗୁଳିରେ ସେ ୧୯୪୮ ଜାନୁୟାରୀ ୩୦ ଶୁକ୍ରବାର ଦିନ ବିରଳାଭବନ ପ୍ରାଙ୍ଗଣରେ ଅପରାହ୍ଣ ୪ଘ/ ୧୭ ମିନିଟରେ ପ୍ରାଣ ହରାଇଲେ ।

ଉଇନ୍‌ଷ୍ଟନ ଚର୍ଚ୍ଚିଲ, ଆମେରୀ ଓ ହୋର ପ୍ରଭୃତିଙ୍କ କୂଟନୀତିରେ ଜିନ୍ନା ପ୍ରଭାବିତ ହୋଇ କଂଗ୍ରେସ ଦଳ ପରିତ୍ୟାଗ କରି ୧୯୪୦ ମସିହା ମାର୍ଚ୍ଚ ମାସରେ ମୁସ୍‌ଲିମ୍‌ଲିଗରେ ଯୋଗେ ଦେଲେ । ସେ ଇଂରେଜ ମାନଙ୍କ କୂଟନୀତିର ଶିକାର ହୋଇଗଲେ । ସେହି ଜାତୀୟବାଦୀ ନେତା ଜିନ୍ନା ମହମ୍ମଦ ଘୋରୀର ଭୂମିକାରେ ଅବତୀର୍ଣ୍ଣ ହେଲେ । ଏକ ଉପମହାଦେଶ ଜାତି, ଧର୍ମ ଭିତ୍ତିରେ ୨ ଖଣ୍ଡ ହୋଇଗଲା । ଏଥିପାଇଁ ଲକ୍ଷ ଲକ୍ଷ ନରନାରୀଙ୍କ ରକ୍ତ ବୋହିଲା । ମହାତ୍ମା ଗାନ୍ଧିଙ୍କ ପ୍ରଭାବ ଜିନ୍ନାଙ୍କ ଉପରେ କିଛି କାମ କଲା ନାହିଁ । ବିଲାତର ଶ୍ରମିକ ଦଳ ଲର୍ଡ ଅଟଲି ନେତୃତ୍ୱରେ ପରିଚାଳିତ ହେଉଥିଲା । ଲର୍ଡ ଓ୍ୱାଭେଲ ପରିସ୍ଥିତି ଦେଖି ମୁସ୍‌ଲିମ୍ ଲିଗ୍‌କୁ ଭିତିରି ସମର୍ଥନ କରୁଥିଲେ । ତେଣୁ ତାଙ୍କୁ ଏଠୁ ବଡଲାଟ ପଦରୁ ଯିବା ପରେ ଶ୍ରମିକ ଦଳର ମନୋନୀତ ବ୍ୟକ୍ତି ଲର୍ଡମାଉଣ୍ଟ ବ୍ୟାଟେନ ଆସିଲେ । ଶ୍ରମିକ ଦଳ ବା ମାଉଣ୍ଟ ବେଟନ୍‌ଙ୍କ ଭାରତକୁ ବିଭାଜନ କରିବା ଇଚ୍ଛା ନ ଥିଲା ।

ଶ୍ରମିକ ଦଳ ବିଲାତ ପାର୍ଲିଆମେଣ୍ଟରେ କ୍ଷମତା ହସ୍ତାନ୍ତର-ବିଲ୍ ଆଗତ କଲେ ଏବଂ ତାହା ଗୃହୀତ ହୋଇଗଲା ଚର୍ଚ୍ଚିଲଙ୍କ ବିରୋଧ ସତ୍ତ୍ୱେ । ୧୯୪୮ ଜୁନ

ମାସରେ ଭାରତକୁ ସ୍ୱାଧୀନତା ଦେବା ସ୍ଥିର ହୋଇଥିଲା । ମାତ୍ର ୧୯୪୨ରେ ମୁସ୍‌ଲିମ୍ ଲିଗ୍‌ର ପ୍ରତ୍ୟକ୍ଷ ସଂଗ୍ରାମ ଡାକରାରେ କଲିକତାରେ ୧୯୪୨ ଅଗଷ୍ଟ ୧୬ ତାରିଖରୁ ହିନ୍ଦୁ ମୁସ୍‌ଲିମ୍ ହାଣ କାଟ ଆରମ୍ଭ ହୋଇଗଲା । ସାରା ଉତ୍ତର ଭାରତରେ ଏହା ବ୍ୟାପୀ ଗଲା ଯଥା ବଂଲାଦେଶ, ବିହାର, ମିରଟ, ପଂଜାବ, ଦିଲ୍ଲୀ ପ୍ରଭୃତି ଅଞ୍ଚଳ ।

କ୍ଷମତା ହସ୍ତାନ୍ତର ସୁନିଶ୍ଚିତ ହୋଇଯିବା ଫଳରେ ମାଉଣ୍ଟ୍ ବାଟେନଙ୍କ ସେକ୍ରେଟାରୀ ମାନେ ତାଙ୍କୁ ସବୁ ବିଷୟରେ ଉଦାସୀନ ଓ ନିରପେକ୍ଷ ରହିବାକୁ ପରାମର୍ଶ ଦେଲେ । ନଚେତ୍ ସାଂପ୍ରଦାୟିକ ଦଙ୍ଗା ଦମନ ପାଇଁ ମାଉଣ୍ଟ ବାଟେନ୍ ଦୃଢ ନିଷ୍ପତ୍ତି ନେଇଥିଲେ । କିନ୍ତୁ ସେମାନେ ଭାରତ ଛାଡି ଶୀଘ୍ର ଚାଲିଯିବେ ତେଣୁ ଏ ଦେଶର ବ୍ୟଥା ବହୁଳ ଘଟଣାର ନୀରବଦ୍ରଷ୍ଟା ପାଲଟି ଗଲେ । ଇଂରେଜମାନେ ଏ ଦେଶର ବିଭିନ୍ନ ବିଦ୍ରୋହ ଯଥା ୧୮୧୭ର ପାଇକ ବିଦ୍ରୋହ, ୧୮୫୭ର ସିପାହୀ ବିଦ୍ରୋହ ଏବଂ ଅନ୍ୟାନ୍ୟ ବିଦ୍ରୋହ, ବିପ୍ଳବ ଦୃଢ ହସ୍ତରେ ଦମନ କରି ପ୍ରାୟ ୨୦୦ ବର୍ଷ ଏ ଦେଶରେ ଶାସନ କରିଥିଲେ । ମୁସ୍‌ଲିମ୍ ଲିଗ୍‌ର ଡାକରା, "ଲଡକେ ଲେଗେଁ ପାକିସ୍ଥାନ, ମରକେ ଲେଗେଁ ପାକିସ୍ଥାନ" ଏକ ରକ୍ତାକ୍ତ ଗୃହ ଯୁଦ୍ଧର ବାତାବରଣ ସୃଷ୍ଟି କଲା ଦେଶରେ । ଗାନ୍ଧି ଓ ନେହେରୁଙ୍କ ସମସ୍ତ ଉଦ୍ୟମ ଜିନ୍ନା ତଥା ଉଦାର ଓ ଜାତୀୟବାଦୀ ମୁସଲମାନ ମାନଙ୍କୁ ବୁଝାଇବାରେ ବିଫଳ ହେଲା । ଅଗତ୍ୟା କଂଗ୍ରେସ ଓ ସମସ୍ତ ନେତାଗଣ ମହାତ୍ମା ଗାନ୍ଧି ଓ ମୌଲାନା ଆବୁଲ୍ କାଲାମଙ୍କ ବ୍ୟତୀତ ବିଭାଜନକୁ ଗ୍ରହଣ କରି ନେଲେ । ଶେଷରେ ମହାତ୍ମା ଗାନ୍ଧି ଅଗତ୍ୟା ରାଜି ହୋଇ ଗଲେ କିନ୍ତୁ ଭାରତ ବିଭାଜନ ହେଲେ ମଧ୍ୟ ଆବୁଲ କାଲାମ ଆଜାଦ ବିଭାଜନକୁ ଗ୍ରହଣ କରିନଥିଲେ ।

ବଡଲାଟ ମାଉଣ୍ଟ ବ୍ୟାଟେନ କିଂକର୍ତ୍ତବ୍ୟ ବିମୂଢ ହୋଇ ଅନ୍ତରୀଣ ସରକାର ନେତା ଜବାହର ଲାଲ୍‌ଙ୍କ ସହିତ ପରାମର୍ଶ କରି ଶୀଘ୍ର ଭାରତକୁ ଦୁଇ ଦେଶରେ ପରିଣତ କରି କ୍ଷମତା ହସ୍ତାନ୍ତରର ବ୍ୟବସ୍ଥା କଲେ । ବିଲାତର ବିଭାଜନ ନକ୍ସା କରିବା ପାଇଁ ରାଡ କ୍ଲିଫଙ୍କୁ ଡକାଇଲେ । ରାଡ କ୍ଲିଫଙ୍କ ସୀମା କମିଶନ ଯୁଦ୍ଧକାଳୀନ ଭିତ୍ତିରେ ତାଙ୍କର ଟିମ୍ ଅକ୍ଳାନ୍ତ ପରିଶ୍ରମ କରି ବିଭାଜନର ନକ୍ସା ଦେଇ ଦେଲେ ଏବଂ ତଦନୁଯାୟୀ ଏ ଦେଶର ହିନ୍ଦୁ ମୁସଲିମ୍ ଜନତା ନିଜ ଜନ୍ମ ସ୍ଥାନ ଛାଡି ପଳାୟନ କଲେ । ଫଳରେ ରକ୍ତାକ୍ତ ସଂଘର୍ଷ ସୃଷ୍ଟି ହୋଇଥିଲା । ମାଉଣ୍ଟ ବ୍ୟାଟେନ୍ ୧୯୪୮ ଜୁନ ପରିବର୍ତ୍ତେ ୧୯୪୭ ମସିହା ଅଗଷ୍ଟ ୧୪ ତାରିଖରେ

ପାକିସ୍ଥାନକୁ ଯାଇ କ୍ଷମତା ହସ୍ତାନ୍ତର କଲେ ମୁସ୍‌ଲିମ୍ ନେତାଙ୍କୁ ଏବଂ ଅଗଷ୍ଟ ୧୫ ରାତି ୧୨ଟାରେ ଭାରତ ଅର୍ଥାତ୍ ହିନ୍ଦୁସ୍ଥାନକୁ କଂଗ୍ରେସ ନେତାଙ୍କ ହାତରେ କ୍ଷମତା ହସ୍ତାନ୍ତର କରି ଭାରତର ଜାତୀୟ ପତାକା ଉଡାଇଲେ, ୟୁନିୟନ୍ ଜ୍ୟାକରୁ ଅବତରଣ କରାଇଲେ ଅଶ୍ରୁପୂର୍ଣ୍ଣ ଚକ୍ଷୁରେ। ୧୯୪୮ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ସେ ଏଦେଶ ଚଳାଇ ବିଲାତ ପ୍ରସ୍ଥାନ କଲେ।

ଚମ୍ପାପୁର ବିଦ୍ୟାଳୟ ଓ ଗୋବିନ୍ଦ ବାବୁଙ୍କ ଅନୁଭୂତି :- ମହାତ୍ମା ଗାନ୍ଧିଙ୍କ ୧୯୩୪ ମସିହାରେ ଚମ୍ପାପୁର ଆଶ୍ରମ ପରିଦର୍ଶନ ପରେ ଏହାକୁ ସେବାଶ୍ରମ ପରିବର୍ତ୍ତେ ବିଦ୍ୟାଳୟ ବା ଗୋଶାଳା କରିବାକୁ ପରାମର୍ଶ ଦେଇଥିଲେ ମାତ୍ର ଏହାକୁ ସ୍କୁଲରେ ପରିଣତ କରାଗଲା। କେତେକ ଇଚ୍ଛା କରିଥିଲେ ଆଶ୍ରମ ଭାଙ୍ଗି ମାଟିରେ ମିଶି ଯାଉ।

ଜାତୀୟ ଜୀବନ ଶିକ୍ଷା ଦେଉଛି ସତ୍ୟ ଓ କର୍ତ୍ତବ୍ୟକୁ କାର୍ଯ୍ୟରେ ପରିଣତ କରିବା। ଏସତ୍ୟ ସମସ୍ତଙ୍କ ପାଇଁ ସମାନ ନୁହଁ। ସାଧାରଣ ଲୋକ ସତ୍ୟ ଓ କର୍ତ୍ତବ୍ୟ କାର୍ଯ୍ୟରେ ପରିଣତ କଲେ ଅନ୍ୟମାନେ ଅନ୍ୟାୟ ବାଟରେ ଗଲା ବୋଲି କହିବେ। ସତ୍ୟ, ନ୍ୟାୟ ଓ ଭଗବାନ ଏଇ ୩ଟି ଶବ୍ଦ ସମସ୍ତଙ୍କ ପାଇଁ ସମାନ ନୁହଁ। ଦେଶରେ ସମାଜରେ ଯାହାର ଯେପରି ପ୍ରତିଷ୍ଠା ତାହା ପାଇଁ ଏହି ୩ଟି ଶବ୍ଦର ମୂଲ୍ୟ ସେପରି ଅଧିକ। ପ୍ରତିଷ୍ଠିତ ବ୍ୟକ୍ତିଙ୍କ କଥା ଓ କାର୍ଯ୍ୟ ଅଧିକାଂଶଙ୍କ ନିକଟରେ ସତ୍ୟ ଓ ନ୍ୟାୟ ବୋଲି ବିବେଚିତ ହୁଏ। ସାଧାରଣ ମନୁଷ୍ୟର କଥାରେ ସତ୍ୟ ଓ ନ୍ୟାୟ କାହାରିକୁ ଦେଖାଯାଏ ନାହିଁ। ସାଧାରଣ ମନୁଷ୍ୟ ଗ୍ରହଣ କରି ପାରିବା ଭଳି କଥା କହିବା ଓ କାର୍ଯ୍ୟ କରିବା କର୍ମୀଙ୍କ ପକ୍ଷରେ ନିହାତି ଆବଶ୍ୟକ। ଲୋକଙ୍କ ଚିନ୍ତା ଧାରାରେ ପରିବର୍ତ୍ତନ ନ ଆଣି କିଛି ବିପ୍ଳବାତ୍ମକ କାର୍ଯ୍ୟ କଲେ ତାହା ବିଦ୍ରୂପରେ ପରିଣତ ହୁଏ। ମହାପୁରୁଷ ମାନଙ୍କୁ ସମାଜର ପରିବର୍ତ୍ତନ ପାଇଁ ଜୀବନ ବଳି ଦେବାକୁ ପଡିଛି।

କଠୋର ସମାଲୋଚନା ଓ ବଂଧୁ ବାଂଧବଙ୍କ ନିର୍ଦ୍ଦୟ ବ୍ୟବହାର ସମ୍ଭାଳି ଦେଶସେବାରେ ଲାଗି ରହିବାକୁ ହେଲେ ନିଜର ଆଦର୍ଶ ଉପରେ ଅଟଳ ବିଶ୍ୱାସ ରଖି ଅସୀମ ଦୁଃଖ ଓ ନିର୍ଯ୍ୟାତନା ସହିବାକୁ ହୃଦୟ ଓ ମନର ଟାଣଭାବ ଏକମାତ୍ର ଉପାୟ। ସୁବିଧା ଖୋଜିଲେ ଜାତୀୟ ଜୀବନରେ ଆତ୍ମ ବିକାଶ ହୁଏ ନାହିଁ। ସଂଗ୍ରାମ ଦ୍ୱାରା ଜୀବନ ବିକାଶ ପ୍ରାପ୍ତ ହୁଏ। ଜୀବନର ଲକ୍ଷ୍ୟ ଉପରେ ଅଟଳ ବିଶ୍ୱାସ ରଖି କର୍ମକ୍ଷେତ୍ରରେ ଅଗ୍ରସର ହେଲେ ସୁବିଧା ଆସି ମନକୁ ଜୁଟେ।

ବାଧା ପ୍ରତି ବନ୍ଧକ ଯେତେ ଟାଣ ହୁଏ ହୃଦୟରେ କର୍ମ ପ୍ରେରଣା ଭାବ ସେତିକି ପ୍ରବଳ ହୁଏ। ମନୁଷ୍ୟ ଅଧିକାର ପାଇବାକୁ ଲାଳାୟିତ ହୁଏ ଏବଂ ଅଧିକାର ପାଇବାମାତ୍ରେ କର୍ତ୍ତବ୍ୟକୁ ଭୁଲି ଯାଏ।

୧୯୫୭ ମସିହା ଡିସେମ୍ବର ୭ ତାରିଖରୁ ପାର୍ଲିଆମେଣ୍ଟର ରାଜ୍ୟସଭାକୁ ଗୋବିନ୍ଦ ବାବୁ ନିର୍ବାଚିତ ହୋଇଥିଲେ। ରାଜ୍ୟସଭାରେ ଓଡିଶାର ୧୦ ଜଣ ସଭ୍ୟଙ୍କ ମଧ୍ୟରୁ ଜଣେ। ଦେଶସେବା ତଥା ଓଡିଶାବାସୀଙ୍କ ସେବା କରିବା ପାଇଁ ଏହା ଏକ ସୁଯୋଗ। ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦେଶସେବା କରିବାକୁ ସେ ଦେଶବାସୀଙ୍କ ଆଶୀର୍ବାଦ ଭିକ୍ଷା କରିଛନ୍ତି।

ଚମ୍ପାପୁର ବିଦ୍ୟାଳୟରୁ ୧୯୪୫ ମସିହାରେ ବିଦାୟ ନେବା ପରେ ସେ ପ୍ରାୟ ୩ ବର୍ଷ ଆକୁଳି ମିଶ୍ରଙ୍କ ଘରେ ତେଲେଙ୍ଗା ବଜାରରେ ରହିଥିଲେ। ତା'ପରେ ସେ ଜୀବନର ଅବଶିଷ୍ଟ ସମୟ ତାଙ୍କର ପୋଷ୍ୟପୁତ୍ର ଓକିଲ ଶ୍ରୀନିବାସ ମିଶ୍ର (ଖ)ଙ୍କ କାଳିଗଳି ଘରେ ରହୁଥିଲେ। ୧୯୬୬ ମସିହା ଏପ୍ରିଲ ୧୩ ତାରିଖ ଦିନ ଡକ୍ଟର ମହତାବଙ୍କ ବିଷୁବ ଜୟନ୍ତୀରେ ଯୋଗ ଦେଇ ଗୃହ ପ୍ରତ୍ୟାବର୍ତ୍ତନ ସମୟରେ ହୃଦ୍‌ଘାତର ଶିକାର ହୋଇ ଇହଲୀଳା ସମ୍ବରଣ କଲେ। ଏଇଠାରେ ତାଙ୍କର ଜାତୀୟ ଜୀବନର ବିକାଶ ଉପରେ ବକ୍ତବ୍ୟର ପୂର୍ଣ୍ଣଚ୍ଛେଦ ପଡିଲା। ଏହି ଦେଶସେବୀ, ତ୍ୟାଗୀ ପୁରୁଷ ଓ କଇଥା ଚମ୍ପାପୁର ଅଞ୍ଚଳର ଗାନ୍ଧିଙ୍କୁ ମନେ ରଖିବା ପାଇଁ ପ୍ରତିବର୍ଷ ଏହି ବିଦ୍ୟାଳୟରେ ଏପ୍ରିଲ ମାସରେ ଶ୍ରାଦ୍ଧ ଉତ୍ସବ ପାଳିତ ହୁଏ।



